# ଭାରତ ଗୌରବ

(ଏକବିଂଶ ଖଣ୍ଡ)

ଲେଖକ :

ବାବା ବୈଦ୍ୟନାଥ ପାଢ଼ୀ, M. A. D.Ed.

ଜନପ୍ରିୟ ପୁସ୍ତକାଳୟ

ବିନୋଦବିହାରୀ, କଟକ-୨

Digitized by srujanika@gmail.com

ପ୍ରକାଶକ :

ଏନ୍. ଏଲ୍. ଗୁପ୍ତ

ଜନଶକ୍ତି ପୁସ୍ତକାଳୟ

ବିନୋଦ ବିହାରୀ, କଟକ-୨

ପୁର୍ନ ମୁଦ୍ରଣ :

ଏପ୍ରିଲ୍—୧୯୯୦

ମୂଲ୍ୟ : ଟ ୫-୦୦

ମୁଦ୍ରକ :

ମା' ମଙ୍ଗଳା ପ୍ରିଣ୍ଟିଙ୍ଗ୍ ପ୍ରେସ୍

ଅଲିଶାବଜାର, କଟକ-୨

Digitized by srujanika@gmail.com

# ସୂଚୀ





Digitized by srujanika@gmail.com

# କର୍ମବୀର ଗୌରୀଶଙ୍କର

ଯେଉଁମାନେ ପୁରୀ ଯାଇଛନ୍ତି ସେମାନଙ୍କର ଦୃଷ୍ଟି ନିଶ୍ଚୟ ପଡ଼ିଥିବ ଏମାର ମଠ ଉପରେ । ଏହି ମଠ ଓଡ଼ିଶାର ଏକ ପ୍ରସିଦ୍ଧ ମଠ । ଏହା ଧନଧାନ୍ୟରେ ପୂର୍ଣ୍ଣ ।

ଅନେକ ବର୍ଷ ପୂର୍ବେ ଏହି ଏମାର ମଠରେ ଥିଲେ ମାଧବ ପ୍ରସାଦ ରାୟ ନାମକ ଜଣେ ତତ୍ତ୍ୱାବଧାରକ । ସେ ଥିଲେ ଅତି ଦକ୍ଷ । ତାଙ୍କ ଦକ୍ଷତାରେ ଅତିଶୟ ସନ୍ତୁଷ୍ଟ ହୋଇ ମଠର ତତ୍କାଳୀନ ମହନ୍ତ ମହାରାଜା ତାଙ୍କୁ କଟକରେ ଏକ ବିରାଟ ଭବନ ପ୍ରଦାନ କରିଦେଲେ ଅତିସାମାନ୍ୟ ବାର୍ଷିକ ଖଜଣାରେ ; ଅବଶ୍ୟ ତତ୍ତ୍ୱାବଧାରକ ହେବାର ଅନେକ ବର୍ଷ ପରେ ।

ମାଧବଙ୍କ ପୁତ୍ରମାନଙ୍କ ମଧ୍ୟରେ ଜ୍ୟେଷ୍ଠ ଥିଲେ ସଦାଶିବ ପ୍ରସାଦ । ତାଙ୍କର ଚାରିଗୋଟି ସନ୍ତାନଙ୍କ ମଧ୍ୟରେ ସର୍ବପ୍ରଥମ ଥିଲେ କର୍ମବୀର ଗୌରୀଶଙ୍କର । ସେ ଜନ୍ମଗ୍ରହଣ କରିଥିଲେ ୧୮୩୮ ଖ୍ରୀଷ୍ଟାବ୍ଦ ଆଷାଢ଼ ମାସ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ।

ଆଜିକାଲି ପରି ସେ କାଳରେ ପ୍ରତ୍ୟେକ ଗାଁରେ ପାଠଶାଳା ନଥିଲା । ପଢ଼ୁଆ ପିଲାମାନଙ୍କପାଇଁ ଗାଁମାନଙ୍କରେ ଥିଲା କେବଳ ଗୋଟିଏ ଲେଖାଏଁ ଚାଟଶାଳୀ । ସବୁଗାଁରେ ମଧ୍ୟ ଚାଟଶାଳୀ ନଥିଲା । କେବଳ କେତୋଟି ବଡ଼ ବଡ଼ ଗାଁରେ ଥିଲା ଚାଟଶାଳୀ । ଚାଟଶାଳୀର ଶିକ୍ଷକ ଥିଲେ ପୂର୍ବକାଳିଆ ମାଟିବଂଶ ଅବଧାନ । ଚାଟଶାଳୀ ଛଡ଼ା ସ୍ଥାନେ ସ୍ଥାନେ ପାର୍ସି ବା ଉର୍ଦ୍ଦୁ 'ମକ୍ତବ' ସବୁ ରହିଥିଲା ।

Digitized by srujanika@gmail.com

ମକ୍ତବରେ ଯେଉଁମାନେ ଶିକ୍ଷକତା କରୁଥିଲେ ସେମାନଙ୍କୁ କୁହାଯାଉଥିଲା ଆଖୁଞ୍ଜି ।

ଗୌରୀଶଙ୍କରଙ୍କର ବିଦ୍ୟାରମ୍ଭ ହୋଇଥିଲା ଗୃହଶାଳୀରେ । ସେଇଠି ସେ ଓଡ଼ିଆ ପାଠ ଶେଷ କରିସାରିବାପରେ ନାମ ଲେଖାଇଲେ ଗାଁ ପାଖ ମକ୍ତବରେ । ମକ୍ତବରେ ପାଠ ଶେଷ କଲାବେଳକୁ ତାଙ୍କର ବୟସ ଏଗାର ବର୍ଷ । ତା'ପରେ ସେ କଟକ ଆସି ନାମ ଲେଖାଇଲେ ହାଇସ୍କୁଲରେ । ସେଇଠି ସେ ପଢ଼ିଲେ ଆଠ ବର୍ଷ । ହାଇସ୍କୁଲ ପାଠ ଶେଷ କରିବାପରେ କଲେଜରେ ନାମ ଲେଖାଇବା ପାଇଁ ପ୍ରବଳ ଇଚ୍ଛାହେଲା ତାଙ୍କର । ତାଙ୍କ ପିତାମାତା ମଧ୍ୟ ଚାହିଁଲେ ସେ ଯାଇ କଲେଜରେ ପଢ଼ିବେ । ଆଜିକାଲି ଓଡ଼ିଶାରେ ଶହଶହ କଲେଜ ଅଛି । ପ୍ରତି ସହର ଓ ବଡ଼ ବଡ଼ ଗାଁରେ ଗୋଟିଏ ଲେଖାଏଁ କଲେଜ ; କିନ୍ତୁ ସେ କାଳରେ ଗୋଟିଏ ହେଲେ କଲେଜ ନଥିଲା ଆମ ରାଜ୍ୟରେ ; ତେଣୁ ଗୌରୀଶଙ୍କର ସୁଦୂର ବଙ୍ଗଳାର ହୁଗୁଳି କଲେଜରେ ଅଧ୍ୟୟନ କରିବା ସ୍ଥିର ହେଲା ।

ଆଜିକାଲି କଲିକତା ଯିବାପାଇଁ ରେଳ, ବସ୍, ଉଡ଼ାଜାହାଜ ପ୍ରଭୃତିର ସୁବିଧା ଅଛି ; କିନ୍ତୁ ସେ କାଳରେ ସେହିସବୁ ସୁବିଧା କିଛି ନଥିଲା । ଦୂର ପଥ ଯାତ୍ରା କରିବାପାଇଁ ଏକମାତ୍ର ଆଶ୍ରୟ ଥିଲା ବଳଦ ଗାଡ଼ି ।

୧୮୫୭ ମସିହାର ଜୁନ୍ ମାସ । ପ୍ରବଳ ବର୍ଷାଋତୁ । ବାହାରକୁ ଯିବାପାଇଁ ଲୋକଙ୍କର ସାହସ ନାହିଁ । ତଥାପି ସାହସ ବାନ୍ଧିଲେ ଗୌରୀଶଙ୍କର । ବାଧାବିଘ୍ନ ପ୍ରତି ଭ୍ରୂକ୍ଷେପ ନକରି ବଳଦ ଗାଡ଼ିରେ ବସି ବାହାରିଲେ ହୁଗୁଳି ଅଭିମୁଖରେ । ଦଶହଜ ବଳଦ

Digitized by srujanika@gmail.com

ଗାଡ଼ିରେ ବସିବାପରେ ପହଞ୍ଚିଲେ ସେ ବାଲେଶ୍ୱରରେ । ଏତେଦିନ ନିରବଚ୍ଛିନ୍ନ ବଳଦ ଗାଡ଼ିରେ ବସିବା ଯୋଗୁଁ ତାଙ୍କ ଦେହ ହାତ ବ୍ୟଥିଲା । ସେ ଆଉ ବଳଦ ଗାଡ଼ିରେ ବସିବାକୁ ଇଚ୍ଛା କଲେନାହିଁ । ବଳଦ ଗାଡ଼ିକୁ ସେଇଠୁ ବିଦାୟ ଦେଇ ଚାଲିବାକୁ-ଲାଗିଲେ ପଦବ୍ରଜରେ । ଚାଲି ଚାଲି ଦଶଦିନ ପରେ ସେ ପହଞ୍ଚିଲେ-ତାଙ୍କ ଲକ୍ଷ୍ୟସ୍ଥଳ ହୁଗୁଳିରେ ।

ଯଥାସମୟରେ ନାମ ଲେଖାଇଲେ ଗୌରୀଶଙ୍କର ହୁଗୁଳି କଲେଜରେ । ସିନିୟର ଛାତ୍ର ବୃତ୍ତି ପରୀକ୍ଷାପାଇଁ ଉଦ୍ଦିଷ୍ଟ ବହି ସବୁ ସେ ଅଧ୍ୟୟନ କରିବାକୁ ଲାଗିଲେ ଅତି ମନୋଯୋଗ ସହକାରେ । ସେତେବେଳେ ଆମ ଦେଶରେ ନୂଆ ହୋଇ ପ୍ରବର୍ତ୍ତିତ ହୋଇଥାଏ ଇଂରେଜୀ ଶିକ୍ଷା । ଇଂରେଜୀ ଶିକ୍ଷାକଲେ ସରକାରୀ ଚାକିରି ମିଳିବାର ସୁନିଶ୍ଚିତ ଥିବାରୁ ଅନେକ ଶିକ୍ଷାକରିବାକୁ ଲାଗିଲେ ଇଂରେଜୀ । ଗୌରୀଶଙ୍କର ମଧ୍ୟ ଶିକ୍ଷା କରିବାକୁ ଲାଗିଲେ ସେହି ଇଂରେଜୀ ଭାଷା, ସେ କାଳର ରାଜଭାଷା । ଏହି ଭାଷା ଶିକ୍ଷା କରିବାପାଇଁ ସେ ବ୍ୟୟ କରୁଥିଲେ ଅନେକ ସମୟ ।

ହୁଗୁଳି କଲେଜରେ ସେ ଚିହ୍ନିଗଲେ ସମସ୍ତଙ୍କୁ । ଚତୁର୍ଦ୍ଦିଗରେ ଶୁଣାଗଲା ତାଙ୍କର ପ୍ରଶଂସା । ଶିକ୍ଷକମାନେ ସମସ୍ତେ ଆଦର କଲେ ତାଙ୍କୁ । ଗୌରୀଶଙ୍କର ଦିନରାତି ଲାଗିପଡ଼ିଲେ ସିନିୟର ଛାତ୍ର ବୃତ୍ତି ପରୀକ୍ଷାଲାଗି ପ୍ରସ୍ତୁତ ହେବାପାଇଁ ; କିନ୍ତୁ ଦୁର୍ଭାଗ୍ୟ ତାଙ୍କର । ସେ ପରୀକ୍ଷାରେ ବସିପାରିଲେ ନାହିଁ । ତାଙ୍କର ଆଦର୍ଶ ଚରିତ୍ର ଏବଂ ପ୍ରବଳ ଜ୍ଞାନପିପାସା ଦେଖି ସେଠାର କେତେକ ବ୍ୟକ୍ତି ଚାହିଁଲେ ନିଜ ନିଜର କନ୍ୟାମାନଙ୍କୁ ଗୌରୀଶଙ୍କରଙ୍କୁ ପ୍ରଦାନ କରିବାପାଇଁ ବିବାହ ସୂତ୍ରରେ । ଏହି ଖବର ପହଞ୍ଚିଲା କଟକରେ ପିତା ସଦାଶିବ

Digitized by srujanika@gmail.com

ପ୍ରସାଦଙ୍କ କାନରେ । ସୁଦୂର ପ୍ରବାସରେ ବିବାହ କରିବା ମଙ୍ଗଳ-ଜନକ ନୁହେଁ ଭାବି ସେ ସଙ୍ଗେ ସଙ୍ଗେ ହୁଗୁଳି ସ୍କୁଲ୍ର କର୍ମକରେ ଇସ୍ତଫା ଦେଇ ହାଇକୋର୍ଟ ଓକିଲ ହେବାପାଇଁ ଗୌରୀଶଙ୍କରଙ୍କ ନିକଟକୁ ଚିଠି ଲେଖିଲେ । ପିତୃଭକ୍ତ ଗୌରୀଶଙ୍କର ପରୀକ୍ଷା ନଦେଇ ହୁଗୁଳି ତ୍ୟାଗକଲେ ପିତାଙ୍କର ଚିଠିପାଇବା ସଙ୍ଗେ ସଙ୍ଗେ । ଏହା ୧୮୫୮ ମସିହାର କଥା ।

ଗୌରୀଶଙ୍କର ହୁଗୁଳିରୁ କଲିକତା, କଲିକତାରୁ ବାଲେଶ୍ୱର ଆସିଲେ । ଫେରିବା ବାଟରେ ତାଙ୍କର ହଠାତ୍ ସାକ୍ଷାତ ହୋଇ-ଗଲା ପିତୃବ୍ୟ ଭବାନି ପ୍ରସାଦଙ୍କ ସହିତ ବାଲେଶ୍ୱର ବଜାରରେ । ଭବାନିପ୍ରସାଦଙ୍କ ଅନୁରୋଧ ଅନୁଯାୟୀ ସେ ଚାଲିଲେ ତାଙ୍କ ଘର ଆଡ଼କୁ । ସେଇଠି ଦୁଇଦିନ ରହିବାପରେ ଜଣାଗଲା ବାଲେଶ୍ୱର ଜିଲ୍ଲା ସ୍କୁଲ୍‌ରେ ଖାଲିଅଛି ଜଣେ ଶିକ୍ଷକଙ୍କ ସ୍ଥାନ । ଭବାନିପ୍ରସାଦ ତାଙ୍କୁ ସେହି ଚାକିରିରେ ଯୋଗଦେବାପାଇଁ ଉପଦେଶ ଦେଲେ । ପିତୃବ୍ୟଙ୍କ ଉପଦେଶ ମାନି ସେ ଶିକ୍ଷକତା କଲେ ମାସିକ କୋଡ଼ିଏ ଟଙ୍କାରେ ସତ ; କିନ୍ତୁ ବାଲେଶ୍ୱରର କ୍ଷୁଦ୍ର ପରିସର ତାଙ୍କୁ ଆଦୌ ଭଲ ଲଗିଲାନାହିଁ । ସେ ବ୍ୟଗ୍ରହୋଇ ଉଠିଲେ ବାଲେଶ୍ୱର ସ୍କୁଲ୍ର କର୍ମକରେ ପଡ଼ିବାପାଇଁ । ୧୮୫୯ ମସିହାରେ ସେ ବାଲେଶ୍ୱର ସ୍କୁଲ୍ର ପଡ଼ିଥିଲେ କର୍ମକରେ । ବାଲେଶ୍ୱର ଜିଲ୍ଲା ସ୍କୁଲରେ ତାଙ୍କର ଛାତ୍ର ଥିଲେ ମଧୁବାବୁ । ମଧୁବାବୁ ଗୌରୀଶଙ୍କରଙ୍କ ଅଧ୍ୟାପନାରୁ ପ୍ରଭୂତ ଉପକାର ପାଇଥିଲେ ବୋଲି ତାଙ୍କୁ ଗୁରୁରୂପେ ପୂଜା କରିଥିଲେ ଆଜୀବନ ।

ଗୌରୀଶଙ୍କରଙ୍କର ଭାଗ୍ୟରେ ଲେଖାଯାଇଛି ସେ କଟକବାସୀ ସ୍ୱୀକାର କରିବେ । ବିଧାତାର ବିଧାନ ଆନ ହେବ କିପରି ? ସେ

କଟକରେ ପଢ଼ୁଥିବାକ୍ଷଣି କଟକ କମିଶନରଙ୍କ ଅଫିସରେ ଜଣେ କିରାଣି ଗଲେ ଛୁଟିରେ । ଏହାଶୁଣି ଚାକିରିପାଇଁ ଆବେଦନ କଲେ ଗୌରୀଶଙ୍କର । ତାଙ୍କୁ ସଙ୍ଗେ ସଙ୍ଗେ ନିଯୁକ୍ତ କରାଗଲା ସେହି କିରାଣିଙ୍କ ସ୍ଥାନରେ ; କିନ୍ତୁ ଅସ୍ଥାୟୀ ଭାବରେ ।

ସେତେବେଳେ କମିଶନର ଥିଲେ କକ୍‌ବର୍ଣ୍ଣ ସାହେବ । ସେ ଅତିଶୟ ସନ୍ତୁଷ୍ଟହେଲେ ଗୌରୀଶଙ୍କରଙ୍କ ଉପରେ । ତାଙ୍କର କାର୍ଯ୍ୟ-ଦକ୍ଷତା ଓ କର୍ତ୍ତବ୍ୟପରାୟଣତା ଲକ୍ଷ୍ୟକରି ଚାହିଁଲେ ତାଙ୍କୁ ସ୍ଥାୟୀ ଭାବରେ ଚାକିରି ଦେବାପାଇଁ ; କିନ୍ତୁ ଅଳ୍ପଦିନ ମଧ୍ୟରେ ସେହି କିରାଣି ଜଣଙ୍କ ଫେରିଆସି ଯୋଗ ଦେବାକୁ ଚାହିଁଲେ ନିଜ କାର୍ଯ୍ୟରେ । ସରକାରୀ ନିୟମ ଅନୁଯାୟୀ ଗୌରୀଶଙ୍କରଙ୍କୁ ଛାଡ଼ିବାକୁ ପଡ଼ିଲା ସେହି ଚାକିରି ; କିନ୍ତୁ କମିଶନର ସାହେବ ଭୁଲି ନଥିଲେ ତାଙ୍କୁ । ସେ ଚାହିଁଲେ ସୁଯୋଗ ମିଳିଲେ ଗୌରିଶଙ୍କରଙ୍କୁ ନିଯୁକ୍ତ କରିବାପାଇଁ । ସେତେବେଳକୁ ଖାଲିଥିଲା କଟକ କଲେକ୍ଟରିରେ ଗୋଟିଏ କିରାଣି ଚାକିରି । ସେଥିପାଇଁ ପଡ଼ିଥିଲା ଶହ ଶହ ଦରଖାସ୍ତ । କୌଣସି ଦରଖାସ୍ତ ବିଚାରକୁ ନନେଇ ଚାକିରି ଛଡ଼ା ଦିନ ଗୌରୀଶଙ୍କରଙ୍କୁ ନିଯୁକ୍ତ କରିଦେଲେ କମିଶନର ସାହେବ କଟକ କଲେକ୍ଟରିରେ, ସେହି ମାସିକ କୋଡ଼ିଏ ଟଙ୍କାରେ ।

ପ୍ରାୟ ବାର ବର୍ଷ ଚାକିରିକଲେ ଗୌରୀଶଙ୍କର କଟକ କଲେକ୍ଟରିରେ । ଅତିଶୟ ଦକ୍ଷ ଓ କର୍ତ୍ତବ୍ୟପରାୟଣ ଥିଲେ ସେ ; ଏହି ଦୀର୍ଘକାଳ ମଧ୍ୟରେ କି ହାକିମହୁକୁମା, କି କିରାଣି, କି ସାଧାରଣଲୋକ ସମସ୍ତେ ଗାଇବାକୁ ଲାଗିଲେ ତାଙ୍କର ପ୍ରଶଂସା । ସାଧାରଣ ଅମଲାମାନଙ୍କର ଥିଲା ଅନେକ ଦୋଷ ଦୁର୍ବଳତା ; ତେଣୁ ସେମାନଙ୍କପରି ମୁହଁକରି ସର୍ବଦା ଧୃତହସ୍ତ ଚିତ୍ତରେ କାର୍ଯ୍ୟ

Digitized by srujanika@gmail.com

କରୁଥା'ନ୍ତି ସେମାନେ ; କିନ୍ତୁ ଗୌରୀଶଙ୍କ ଥିଲେ ସର୍ବଦା ପ୍ରଫୁଲ୍ଲ । ସେହିଭଳି ତୋଷାମୋଦପ୍ରିୟତା କିଛି ନଥିଲା ତାଙ୍କର । ସେ ଯାହା ଉଚିତ ନ୍ୟାୟସଙ୍ଗତ ମନେକରୁଥିଲେ କେବଳ ତାହା ଲେଖୁଥିଲେ ନଥିରେ । କେହି କିଛି ପ୍ରବର୍ତ୍ତାଇଲେ ସେ ତାହା ଗ୍ରହଣ କରୁନଥିଲେ । ଖୋଲ୍‌ଖୋଲ୍ ଜଣାଇଦେଉଥିଲେ ଯେ, ବିବେକ ଅନୁଯାୟୀ ସେ କାମ କରିବେ । ନ୍ୟାୟକୁ ବଳି ଦେବେ ନାହିଁ ଆଦୌ ।

ତାଙ୍କୁ ଅତିଭଲ ପାଇବାକୁ ଲାଗିଲେ କଟକର କଲେକ୍‌ଟର ମାକଫରସନ୍ ସାହେବ । ଯେତେବେଳେ କଟକ ଅଦାଲତରେ ଅନୁବାଦକ ପଦ ଖାଲିହେଲା । ସେତେବେଳେ ମାକ୍‌ଫରସନ ଥିଲେ ଜଜ୍ ସାହେବ । ଗୁଣଗ୍ରାହୀ ମାକ୍‌ଫରସନ ଆଦର୍ଶ ରାଜକର୍ମୀ ଗୌରୀଶଙ୍କରଙ୍କୁ ନିଯୁକ୍ତ କଲେ ସେହି ଅନୁବାଦକ ପଦରେ । ତାଙ୍କୁ ମାସିକ ଦରମା ମିଳିଲା ଶହେ ଟଙ୍କା । ଏଇଠି ମଧ୍ୟ ନିଜ ସଦ୍‌ଗୁଣର ଅଶେଷ ପରିଚୟ ଦେଇଥିଲେ ଗୌରୀଶଙ୍କର । ରାଜକାର୍ଯ୍ୟ ସମ୍ପାଦନ ସଙ୍ଗେ ସଙ୍ଗେ ଦେଶବାସୀଙ୍କର ସେବା କରିବା ମନ୍ତ୍ର ଥିଲା ଗୌରୀଶଙ୍କରଙ୍କର । ସେ ଏହି ମନ୍ତ୍ରରେ ଯେପରି ଉପଯୁକ୍ତ ହୋଇ-ଥିଲେ ସେହିଭଳି ଉପଯୁକ୍ତ ହୋଇନାହାନ୍ତି ଓଡ଼ିଶାର ଅନ୍ୟକେହି ଆଜିପର୍ଯ୍ୟନ୍ତ । ଏହି ଅନୁବାଦକ କାର୍ଯ୍ୟ ଦୀର୍ଘ କୋଡ଼ିଏ ବର୍ଷକାଳ ଅତିଦକ୍ଷତାର ସହିତ ସମ୍ପାଦନ କରି ୧୮୮୬ ଖ୍ରୀଷ୍ଟାବ୍ଦରେ ଚାକିରିରୁ ଅବସର ନେଇ ପେନ୍‌ସନ୍ ପାଇଲେ ଗୌରୀଶଙ୍କର ।

ସେ କାଳରେ ପ୍ରାଚୀନ ସାହିତ୍ୟର ଆଦର ଥିଲା ଖୁବ୍ ବେଶୀ । ଗୌରୀଶଙ୍କର ଆଗ୍ରହୀ ହୋଇପଡ଼ିଲେ ପ୍ରାଚୀନ ସାହିତ୍ୟପ୍ରତି । ସାହିତ୍ୟ ସାଧନା କରିବାପାଇଁ ବନମାଳୀ ସିଂହ, ରାଧାମୋହନ

Digitized by srujanika@gmail.com

ପଟ୍ଟନାୟକ, ପ୍ୟାରୀମୋହନ ସେନ୍, ଜଗମୋହନ ଲାଲ ପ୍ରଭୃତି ପ୍ରାଚୀନ ସାହିତ୍ୟାନୁରାଗୀଙ୍କୁ ନେଇ ଗଠନ କଲେ ଗୋଟିଏ ସାହିତ୍ୟ ସଂସଦ । ପ୍ରତିଦିନ ସନ୍ଧ୍ୟାରେ ସଂସଦର ବୈଠକ ବସେ ସଂସଦ ଗୃହରେ । ସେଇଠି ଆଲୋଚନା ହୁଏ ପ୍ରାଚୀନ ସାହିତ୍ୟ । କିଛିଦିନ ଆଲୋଚନାରେ ଅଂଶଗ୍ରହଣ କରିବାପରେ ଗୌରୀଶଙ୍କରଙ୍କର ପ୍ରାଚୀନ ସାହିତ୍ୟ ପ୍ରତି ଆଗ୍ରହର ପରିମାଣ ଏତେ ବେଶୀ ପରିମାଣରେ ବଢ଼ିଥିଲା ଯେ, ସେ ଦୃଢ଼ସଂକଳ୍ପ କଲେ ତାହାର ସର୍ବାଙ୍ଗୀନ ଉନ୍ନତି ଲାଗି ଜୀବନ ଉତ୍ସର୍ଗ କରିବାପାଇଁ । ତାଙ୍କର ସାହିତ୍ୟ ସାଧନା ଯୋଗୁଁ ଓଡ଼ିଆ ସାହିତ୍ୟର ଉନ୍ନତି ହୋଇଥିଲା ଖୁବ୍ ବେଶୀ, ଆଉ ସେଥିଯୋଗୁଁ ଧନ୍ୟ ହୋଇଥିଲା ସାରା ଓଡ଼ିଆ ଜାତି ।

ସଂଗୀତ ଯେ ସାହିତ୍ୟର ଏକ ଅବିଚ୍ଛେଦ୍ୟ ଅଙ୍ଗ, ତାହା ପ୍ରାଣେ ପ୍ରାଣେ ଅନୁଭବ କରିଥିଲେ ଗୌରୀଶଙ୍କର । ସେଥିପାଇଁ ସଂଗୀତର ଉନ୍ନତିପାଇଁ ସେ ଗଠନ କଲେ ଗୋଟିଏ ସଂଗୀତ ଗୋଷ୍ଠୀ । ସେହି ସଂଗୀତ ଗୋଷ୍ଠୀରେ ଯୋଗଦେଲେ ଓଡ଼ିଶାର ବିଶିଷ୍ଟ ସଙ୍ଗୀତଜ୍ଞ ଓ ସଙ୍ଗୀତପ୍ରେମୀ ବ୍ୟକ୍ତିମାନେ । ଗୌରୀଶଙ୍କର ଏଇଠି ଗ୍ରହଣ କଲେ ମୁଖ୍ୟଅଂଶ । ଚେଷ୍ଟାକଲେ ଗାନବାଦ୍ୟରେ ପ୍ରବୀଣ ହେବାପାଇଁ । ସଂଗୀତ ଶିକ୍ଷାଲାଭ କରିବାପାଇଁ ତାଙ୍କର ଏତେ ପ୍ରବଳ ଅନୁରାଗ ହେଲା ଯେ, ସେ ସୁଦୂର ପଞ୍ଜାବରୁ ଅଣାଇଲେ ଜଣେ ସଂଗୀତ ଓସ୍ତାଦ୍ । ତାଙ୍କର ଥିଲେ ବେତନଭୋଗୀ ଗୁରୁରୂପେ । ତାଙ୍କଠାରୁ ଅଳ୍ପଦିନ ଭିତରେ ଆୟତ୍ତ କରିପାରିଲେ ସଂଗୀତ କଳା । ନାରୀ କଣ୍ଠରେ ସଂଗୀତର ସୁମଧୁର ମୂର୍ଚ୍ଛନା ଅତିବେଶୀ ଭଲଭାବରେ ପ୍ରସ୍ଫୁଟିତ ହେବା ଲକ୍ଷ୍ୟକରି ସେ ସଂଗୀତ ପ୍ରତି ଆକୃଷ୍ଟ କରାଇଲେ କଟକର କେତେଜଣ ଯୁବତୀ ବେଶ୍ୟାଙ୍କୁ । ସେମାନଙ୍କ ପିଛା ଅଜସ୍ର

Digitized by srujanika@gmail.com

ଟଙ୍କା ଖର୍ଚ୍ଚକର ସଙ୍ଗୀତ କଳାରେ ପାରଦର୍ଶିଣୀ କରାଇ ପାରନ୍ତେ ସେମାନଙ୍କୁ । ଗଞ୍ଜାମର ଦାଣ୍ଡୀନାଚ ଯେଉଁମାନେ ଦେଖିଥିବେ ସେମାନେ ନିଶ୍ଚୟ ଉପଲବ୍ଧି କରିବେ ଏହାର ସତ୍ୟତା ।

ଆଜକାଲ ଓଡ଼ିଶାରେ ଶହ ଶହ ଛାପାଖାନା ଦେଖିବାକୁ ମିଳେ ; କିନ୍ତୁ ସେ କାଳରେ ଓଡ଼ିଶାରେ ଥିଲା ଏକମାତ୍ର ଛାପାଖାନା, କଟକ ମିଶନ ପ୍ରେସ୍ । କଟକରେ ସେହି ପ୍ରେସ୍ ସ୍ଥାପିତ ହୋଇଥିଲା ଖ୍ରୀଷ୍ଟିୟାନ ସୋସାଇଟିଦ୍ୱାରା କେବଳ ଖ୍ରୀଷ୍ଟଧର୍ମ ସଂକ୍ରାନ୍ତ ବହି ଓ ପାଦ୍ରୀମାନଙ୍କ ଲିଖିତ ଓଡ଼ିଆ ବହି । ଅନ୍ୟବହି କିଛି ବିଶେଷତଃ ଅନ୍ୟ ଧର୍ମର ବହି କିଛି ଛାପୁ ନଥିଲା କଟକ ମିଶନ ପ୍ରେସ୍ ; ତେଣୁ ପ୍ରାଚୀନ ଓଡ଼ିଆ ପୁରାଣ ଧର୍ମଗ୍ରନ୍ଥ ଆଦି ଓଡ଼ିଶାରେ ଛାପାହେବା ସୁବିଧା କିଛି ନଥିଲା । ଗୌରୀଶଙ୍କର ମିଶନ ପ୍ରେସ୍‌ର କର୍ମକର୍ତ୍ତା ମାନଙ୍କୁ ହିନ୍ଦୁ-ମାନଙ୍କର ପୁରାଣ ଓ ଧର୍ମଗ୍ରନ୍ଥ ଛାପିବାପାଇଁ ଅନୁରୋଧ କଲେ ; କିନ୍ତୁ ତାଙ୍କ ଅନୁରୋଧ କେବଳ ଅନୁରୋଧରେ ହିଁ ରହିଗଲା । କେହି ତାଙ୍କର ଅନୁରୋଧ ପ୍ରତି କର୍ଣ୍ଣପାତ କଲେନାହିଁ । ମିଶନ ପ୍ରେସ୍‌ର କର୍ମକର୍ତ୍ତାଙ୍କର ଏତାଦୃଶ ବ୍ୟବହାର ଗୌରୀଶଙ୍କରଙ୍କୁ ବାଧିଲା ଖୁବ୍-ବେଶୀ । ସେ ଓ ତାଙ୍କ ବନ୍ଧୁ ଜଗମୋହନ ରାୟ ତାଳଚେର, ଢେଙ୍କାନାଳ, ଆଠଗଡ଼, ବଡ଼ାମ୍ବା, ନରସିଂହପୁର, ନୟାଗଡ଼, ଦଶପଲ୍ଲା ଆଦି ଗଡ଼ଜାତର ରାଜା ଏବଂ କେନ୍ଦ୍ରାପଡ଼ା, କୋଠଦେଶ, ଭିଙ୍ଗାରପୁର ପ୍ରଭୃତିର ଜମିଦାର ଏବଂ ଅନ୍ୟାନ୍ୟ ହିତୈଷୀ ବ୍ୟକ୍ତି-ମାନଙ୍କୁ ହୃଦ୍‌ବୋଧ କରାଇ ସେମାନଙ୍କଠାରୁ ଅର୍ଥଦାନ ଆଣି ଯୌଥଭିତ୍ତିରେ ସ୍ଥାପନ କଲେ 'କଟକ ପ୍ରିଣ୍ଟିଂ କମ୍ପାନୀ' ନାମକ ଗୋଟିଏ ମୁଦ୍ରାଳୟ । ଏହି ନବପ୍ରତିଷ୍ଠିତ କମ୍ପାନୀ ସୁଚାରୁରୂପେ ପରିଚାଳନା କରିବାପାଇଁ କେବଳ ଗୌରୀଶଙ୍କର ହିଁ ଉପଯୁକ୍ତ

Digitized by srujanika@gmail.com

ବୋଲି ଭାବିଲେ ସମସ୍ତେ ; ତେଣୁ ପ୍ରିଣ୍ଟିଂ କମ୍ପାନୀର ପରିଚାଳନା ଦାୟିତ୍ୱ ଅର୍ପଣ କରାଗଲା ଗୌରୀଶଙ୍କରଙ୍କ ହସ୍ତରେ ।

୧୮୬୫ ଖ୍ରୀଷ୍ଟାବ୍ଦ ଜୁଲାଇ ପନ୍ଦର ଉତ୍କଳବାସୀଙ୍କ ପକ୍ଷରେ ଏକ ସ୍ମରଣୀୟ ଦିବସ । ସେହିଦିନ ଆରମ୍ଭ ହୋଇଥିଲା ପ୍ରିଣ୍ଟିଂ କମ୍ପାନୀ ଛାପାଖାନାରେ ଛାପାକାର୍ଯ୍ୟ । ଆଜିକାଲି ଅକ୍ଷର ଖଞ୍ଜି ଯେପରି ଛାପ ଯାଏ ସେ କାଳରେ ସେହିପରି ଛାପାକାର୍ଯ୍ୟ କେବଳ ଅତି ବଡ଼ ବଡ଼ ଛାପାଖାନାରେ ହେଉଥିଲା । ଅଧିକାଂଶ ଛାପାଖାନା ଛାପୁଥିଲେ ଲିଥୋଗ୍ରାଫ୍ ପଦ୍ଧତିରେ ; ଛାପିବାକୁ ଥିବା ବିଷୟସବୁ ଲେଖାଯାଉଥିଲା ହାତରେ ପଥର ପଟା ଉପରେ । ତା'ପରେ ତାହା ଛାପାଯାଉଥିଲା ଲିଥୋଗ୍ରାଫ ପ୍ରେସରେ । ତେଣୁ ଲିଥୋଗ୍ରାଫି ଛାପା-ପାଇଁ ଦରକାର ସୁନ୍ଦର ଅକ୍ଷର । ସୁନ୍ଦର ଅକ୍ଷର ନହେଲେ ଛାପା ସୁନ୍ଦର ଓ ସୁପାଠ୍ୟ ହୁଏ ନାହିଁ । ସୌଭାଗ୍ୟର କଥା, ସେ କାଳରେ ସବୁଠାରୁ ବେଶୀ ସୁନ୍ଦର ଅକ୍ଷର ଲେଖିପାରୁଥିବା ଭଗୀରଥି ଷାଠିଆ ଥିଲେ ପ୍ରିଣ୍ଟିଂ କମ୍ପାନୀର ଜଣେ ଅଂଶୀଦାର । ସେ ଲେଖିବାପାଇଁ ସ୍ୱତଃ ଆଗ୍ରହୀ ହେବା ଯୋଗୁଁ ଲିଥୋଗ୍ରାଫ୍ ପ୍ରେସ୍‌ରେ ଛାପାଯାଇ ପାରିଲା ଅନେକ ଓଡ଼ିଆ ବହି ଅତି ସୁନ୍ଦର ଭାବରେ । ଏହି କମ୍ପାନୀର ଆର୍ଥିକ ଦେହସ୍ଥିତି ଦିନକୁଦିନ ଅଧିକ ଭଲ ହେବାକୁ ଲାଗିଲା । ଶେଷରେ ୧୮୭୦ ମସିହାରେ କମ୍ପାନୀ କିଣିଲା ଗୋଟିଏ ମୁଦ୍ରାଯନ୍ତ୍ର । ସେହି ମୁଦ୍ରାଯନ୍ତ୍ର ରଖାଗଲା କଟକ ଦରଘା ବଜାରରେ କମ୍ପାନୀଦ୍ୱାରା ନବନିର୍ମିତ ଦ୍ୱିତଳ ପ୍ରାସାଦରେ । ସେହି ଦିନଠାରୁ ଚାଲିଲା ଛାପା-କାର୍ଯ୍ୟ ଆଧୁନିକ ଭାବରେ ।

ଗୌରୀଶଙ୍କର ସେତେବେଳେ ଥାଆନ୍ତି ଜଣେ ରାଜକର୍ମଚାରୀ । ଅଫିସକୁ ଯିବା ପୂର୍ବରୁ ଏବଂ ଅଫିସ ଛାଡ଼ିବା ପରେ ସେ ତଦାରଖ

Digitized by srujanika@gmail.com

କରୁଥିଲେ ପ୍ରେସ୍‌ର ଯାବତୀୟ କାର୍ଯ୍ୟ । ସେ ଦିନେ ତମାମ ପ୍ରେସ୍‌ରେ ନ ରହିଲେ ମଧ୍ୟ କାର୍ଯ୍ୟ ବଣ୍ଟନ ଏହିଭଳି ଦକ୍ଷଭାବରେ କରିଦେଇ-ଥିଲେ ଯେ, ତାଙ୍କ ଅନୁପସ୍ଥିତିରେ ମଧ୍ୟ ପ୍ରେସ୍‌କାର୍ଯ୍ୟ ପରିଚାଳିତ ହୋଇପାରୁଥିଲା ଅତି ସୁରୁଖୁରୁରେ । ତାଙ୍କର ପ୍ରାଚୀନ ସାହିତ୍ୟପ୍ରତି ଅଗାଧ ମମତା ଥିବା ଯୋଗୁଁ ଲୋକପଠାଇ ସେ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ସଂଗ୍ରହ କରାଇଲେ ପୁରୁଣା ଧର୍ମଗ୍ରନ୍ଥାଦି ଅସଂଖ୍ୟ ପୋଥି । ସେଗୁଡ଼ିକ ପ୍ରେସ୍‌ରେ ଛାପି ପ୍ରସାର କଲେ ପ୍ରାଚୀନ ଓଡ଼ିଆ ସାହିତ୍ୟ । କେବଳ ଏତିକିରେ ଚୁପ ରହିଲେନି ଗୌରୀଶଙ୍କର । ସେ ସେହି ପ୍ରେସ୍‌ରେ ଛାପିଲେ ସର୍ବେଶ୍ୱର ପଟ୍ଟଯୋଷୀ, ଚନ୍ଦ୍ରଶେଖର ଆଚାର୍ଯ୍ୟ, ହରିହର ଖଡିରତ୍ନ ପ୍ରଭୃତି ତତ୍କାଳୀନ ପ୍ରସିଦ୍ଧ ଜ୍ୟୋତିଷମାନଙ୍କଦ୍ୱାରା ସଙ୍କଳିତ ଉନ୍ନତ ପଞ୍ଜିକା । କେତେ ବର୍ଷ ପରେ ସେହି ପ୍ରେସରେ ଛପା ହେବାଗଲା ପୃଥିବୀପ୍ରସିଦ୍ଧ ମହାଜ୍ୟୋତିଷୀ ପଠାଣି ସାମନ୍ତଙ୍କ ଦୃକ୍‌ସିଦ୍ଧ ନୂତନ ପଞ୍ଜିକା । ଗୌରୀଶଙ୍କରଙ୍କର ସୁପରିଚାଳନା ଯୋଗୁଁ ଏହିଭଳି ପ୍ରିଣ୍ଟିଂ କମ୍ପାନୀ ଉନ୍ନତି କରିବାକୁ ଲାଗିଲା ଦିନକୁ ଦିନ ଆଶାତୀତ ଭାବରେ ।

ଗୌରୀଶଙ୍କର ଉପଲବ୍ଧି କଲେ ଦେଶବାସୀଙ୍କର ଅଭାବ ଅସୁବିଧା, ଶାସକମାନଙ୍କର ଦୋଷ ତ୍ରୁଟି ଇତ୍ୟାଦି ସରକାରଙ୍କ ଦୃଷ୍ଟିକୁ ନ ଆଣିଲେ ଜାତିର ଉନ୍ନତି ଆଦୌ ହୋଇପାରିବ ନାହିଁ । ଓଡ଼ିଆ ଜାତି ପଛେଇ ଯିବସିନା ଅଗ୍ରଗାମୀ ହୋଇପାରିବନି ଆଦୌ । କେବଳ ପତ୍ରିକା ମାଧ୍ୟମରେ ଏହା ସମ୍ଭବ ବୋଲି ଅନୁଭବ କଲେ ଗୌରୀଶଙ୍କର । ଏତିକିବେଳେ ଓଡ଼ିଶାରେ ଦେଖାଦେଲା ସର୍ବଗ୍ରାସୀ ନଅଙ୍କ ଦୁର୍ଭିକ୍ଷ । ରାଜ୍ୟବାସୀ ଭୋଗକଲେ ଅକଥନୀୟ ଦୁଃଖ । ଲୋକଙ୍କର ଏହି ଦୁର୍ଦ୍ଦଶା ସରକାରଙ୍କ କାନରେ ପକାଇ ଦୁର୍ଭିକ୍ଷର ପ୍ରତିକାର କରିବା ଏକ ପୁଣ୍ୟ କର୍ତ୍ତବ୍ୟ ବୋଲି ଅନୁଭବ କରିପାରିଲେ

Digitized by srujanika@gmail.com

ପ୍ରିଣ୍ଟିଂ କମ୍ପାନୀ । ଆଉ କାଳବିଳମ୍ବ ନକରି ପ୍ରକାଶ କରିବାକୁ ଲାଗିଲେ ଗୋଟିଏ ସାପ୍ତାହିକ ପତ୍ରିକା । ଏହି ପତ୍ରିକାର ନାମ ଥିଲା 'ଉତ୍କଳ ଦୀପିକା' । ଏହା ଜନ୍ମଲାଭ କରିଥିଲା ୧୮୬୫ ମସିହା ଅଗଷ୍ଟ ମାସରେ ଅର୍ଥାତ ପ୍ରେସ ସ୍ଥାପିତ ହେବାର ପ୍ରାୟ ମାସକ ପରେ ।

ପୁଣି ଗୌରୀଶଙ୍କରଙ୍କୁ ଦିଆଗଲା ଗୋଟିଏ ନୂତନ ଦାୟିତ୍ୱ । ସମସ୍ତେ ଅନୁଭବ କଲେ ଦୀପିକାର ସମ୍ପାଦକ ହେବାପାଇଁ ଏକମାତ୍ର ଉପଯୁକ୍ତ ହେଉଛନ୍ତି ଗୌରୀଶଙ୍କର । ତାଙ୍କୁ ଅନୁରୋଧ କରାଗଲା ସମ୍ପାଦକ ଦାୟିତ୍ୱ ଗ୍ରହଣ କରିବାପାଇଁ । ସେତେବେଳକୁ ବୟସ ତାଙ୍କର ମୋଟେ ସତେଇଶ ବର୍ଷ । କଟକ କଲେକ୍ଟରରେ ସେ ସେତେବେଳେ ଥାଆନ୍ତି ଜଣେ ଅମଲା । ଅନ୍ତେବେଶୀ ଖଟିବାକୁ ପଡ଼େ ତାଙ୍କୁ ସେଇଠି । ତଥାପି ଜନସାଧାରଣଙ୍କ ମଙ୍ଗଳ କରିବାପାଇଁ ସେ ଗ୍ରହଣକଲେ ସେହି ଦାୟିତ୍ୱ । ପରିବେଷଣ କଲେ ନିର୍ଭୀକ ଓ ନିରପେକ୍ଷ ସମ୍ବାଦ । ଏହି ନିର୍ଭୀକ ଓ ନିରପେକ୍ଷ ସମ୍ବାଦ ପରିବେଷଣ ତାଙ୍କୁ ଥରେ ପକାଇଦେଲା ମହାବିପଦରେ । ଥରେ ସେ ଦୀପିକାରେ ଲେଖିଥିଲେ ଦୀନଦୁଃଖୀଙ୍କ ପ୍ରତି ସରକାରଙ୍କ ଅବହେଳା ଓ ଅବଜ୍ଞା-ଯୋଗୁଁ ସେମାନେ ଭୋଗକରୁଛନ୍ତି ନାନାପ୍ରକାର ଯନ୍ତ୍ରଣା । ଏହି ସମ୍ବାଦ ପହଞ୍ଚିଲା କମିଶନର ରେଭେନ୍‌ସାଙ୍କ କାନରେ । ଶୁଣିବାକ୍ଷଣି ଉତ୍ତ୍ୟକ୍ତ ହୋଇଉଠିଲେ ସେ । ନିଜେ ଅନୁସନ୍ଧାନ କଲେ ଗୌରୀଶଙ୍କରଙ୍କଦ୍ୱାରା ପ୍ରକାଶିତ ସମ୍ବାଦର ସତ୍ୟାସତ୍ୟ ସମ୍ବନ୍ଧରେ । ଯେତେବେଳେ ସେ ଜାଣିପାରିଲେ ଯେ, ଗୌରୀଶଙ୍କର ସତ୍ୟ ସମ୍ବାଦ ପରିବେଷଣ କରିଛନ୍ତି, ସେତେବେଳେ ତାଙ୍କର ମତ ବଦଳାଇବାକୁ ବାଧ୍ୟ ହେଲେ । ରେଭେନ୍‌ସା ସାହେବ ଗୌରୀଶଙ୍କରଙ୍କୁ ଗ୍ରହଣ କଲେ ନିଜର ଜଣେ ପରମ ବନ୍ଧୁ ହିସାବରେ ।

Digitized by srujanika@gmail.com

ନଅଙ୍କ ଦୁର୍ଭିକ୍ଷ ଅବସାନ ହେଲା । ତା'ପରେ ପରେ ଦୀପିକାରେ ଗୌରୀଶଙ୍କର ବାରମ୍ବାର ପ୍ରକାଶ କରିବାକୁ ଲାଗିଲେ ଓଡ଼ିଶାରେ ଦୁର୍ଭିକ୍ଷର ପ୍ରତିକାରପାଇଁ ନାଳଖନନ ଏବଂ ଓଡ଼ିଆ ଛାତ୍ରମାନଙ୍କ ଉଚ୍ଚଶିକ୍ଷା ପାଇଁ ଓଡ଼ିଶାରେ ବିଶେଷତଃ କଟକ ସହରରେ କଲେଜ ପ୍ରତିଷ୍ଠାର ଆବଶ୍ୟକତା ସମ୍ବନ୍ଧରେ । ହୃଦୟବାନ ରେଭେନ୍‌ସା ସାହେବ ବାରମ୍ବାର ଏହି ସମ୍ବାଦ ସମ୍ବନ୍ଧରେ ଶୁଣିବା ପରେ ନାଳ ଖୋଳାଇଦେଲେ । ଓଡ଼ିଶାସାରା ଏବଂ କଟକ ନଗରୀରେ ପ୍ରତିଷ୍ଠାକଲେ ରେଭେନ୍‌ସା କଲେଜ, ମେଡ଼ିକାଲ ସ୍କୁଲ୍, ସର୍ଭେ ସ୍କୁଲ ଓ ନର୍ମାଲ ସ୍କୁଲ । ଆଜିକାଲି ସେହି ନର୍ମାଲ ସ୍କୁଲକୁ କୁହାଯାଉଛି ଟ୍ରେନିଂ ସ୍କୁଲ ।

ଆଜିକାଲିର ଅଧିକାଂଶ ପତ୍ରିକାର ସମ୍ପାଦକମାନେ ସମର୍ଥନ କରନ୍ତି କୌଣସି ନା କୌଣସି ଦଳକୁ । କେହି କେହି ସମର୍ଥନ କରନ୍ତି ସରକାରଙ୍କୁ ; କିନ୍ତୁ ଗୌରୀଶଙ୍କର କାହାରିକୁ ସମର୍ଥନ କରୁ ନଥିଲେ । ସେ ଯେଉଁ ସମ୍ବାଦ ସତ୍ୟ ବୋଲି ଭାବୁଥିଲେ କେବଳ ତାହା ପ୍ରକାଶ କରୁଥିଲେ ଦୀପିକାରେ ; ତେଣୁ ତାଙ୍କ ପତ୍ରିକାରେ ସ୍ଥାନ ପାଉଥିଲା ସରକାରୀ ଓ ବେସରକାରୀ ସବୁ ଲୋକଙ୍କ ଦୋଷ ଓ ଗୁଣ, ଯାହାକି ନିରାଟ ସତ୍ୟ । ଏହିଭଳି ସତ୍ୟ ସମ୍ବାଦ ପରିବେଷଣ ତାଙ୍କୁ ଆଣି ଦେଇଥିଲା ଅଖଣ୍ଡ ସମ୍ମାନ ।

ଯେଉଁ ବ୍ୟକ୍ତି ନିଜ ବୁଦ୍ଧିବଳରେ ପରିଚାଳିତ ହୁଏ କେବଳ ତାହା ପକ୍ଷରେ ସମ୍ଭବ ହୁଏ ନିର୍ଭୀକ ହେବା । ଗୌରୀଶଙ୍କରଙ୍କର ଏହି ଗୁଣ ଥିବାରୁ ସେ ସର୍ବଦା ଥିଲେ ନିର୍ଭୀକ । ଏହି ନିର୍ଭୀକତା ଯୋଗୁଁ ଲୋକେ ତାଙ୍କୁ ପ୍ରଥମେ ପ୍ରଥମେ ଭୁଲ୍ ବୁଝୁଥିଲେ ; କିନ୍ତୁ ପରେ ଯେତେବେଳେ ଗୌରୀଶଙ୍କର ଠିକ୍ କଥା କହୁଛନ୍ତି ବୋଲି

Digitized by srujanika@gmail.com

ଜାଣିପାରୁଥିଲେ, ସେତେବେଳେ ଅନୁତପ୍ତ ହେବାକୁ ବାଧ୍ୟ ହେଉଥିଲେ ସେମାନେ ।

ସେ କାଳରେ ଆଜକାଲି ଭଳି ମନିଅର୍ଡ଼ର ପଠାଯାଉ ନଥିଲା । ଡାକଘର ଜରିଆରେ ପଠାଯାଉଥିଲା କଲେକ୍ଟର ଅଧୀନରେ ଥିବା ଅବକାରୀ ବିଭାଗ ଜରିଆରେ । ସେହି ବିଭାଗ ଦାୟିତ୍ୱରେ ଥିଲେ ଗୌରୀଶଙ୍କର । ସେତେବେଳେ କଟକର ଜଏଣ୍ଟ ମାଜିଷ୍ଟ୍ରେଟ ଥାଆନ୍ତି ଆର୍ମିଷ୍ଟ୍ରଙ୍ଗ୍ ସାହେବ । ଥରେ ଆର୍ମିଷ୍ଟ୍ରଙ୍ଗ୍ ଗୃହିଲେ କିଛି ଟଙ୍କା ମନିଅର୍ଡ଼ର ଦ୍ୱାରା ପଠାଇବାପାଇଁ । ସେ ଟଙ୍କା ଓ ମନିଅର୍ଡ଼ର ଫର୍ମ ପଠାଇଦେଲେ ଗୌରୀଶଙ୍କରଙ୍କ ପାଖକୁ ଜଣେ ଚପରାଶିଦ୍ୱାରା । ଚପରାସୀ ଗୌରୀଶଙ୍କରଙ୍କ ପାଖରେ ପହଞ୍ଚିଲାବେଳକୁ ତିନିଟା ବାଜି-ଯାଇଥିଲା । ତିନିଟାପରେ ଆଉ ମନିଅର୍ଡ଼ର ଗ୍ରହଣକରିବା ବେଆଇନ ଥିବାରୁ ଆଇନମାନ୍ୟକାରୀ ଗୌରୀଶଙ୍କର ତାଙ୍କୁ ଫେରାଇଦେଲେ । ଚପରାସୀ ଫେରିଯାଇ ସାହେବଙ୍କୁ ଏହା ଜଣାଇଲା । ସାହେବ ରାଗିଯାଇ ନିଜେ ଆସି ମନିଅର୍ଡ଼ର ହିସାବ ଖାତାରୁ ସେ ଦିନର ମୋଟ ହିସାବ କାଟିଦେଇ, ନିଜ ହାତରେ ନିଜ ମନିଅର୍ଡ଼ର ବିବରଣୀ ଲେଖିଦେଇ ସାରି ପୁଣି ମନିଅର୍ଡ଼ର ହିସାବ ମୋଟକରି ସଗର୍ବରେ ଛାଡ଼ିଲେ ଗୌରୀଶଙ୍କରଙ୍କ ଅଫିସ୍ ।

ସାହେବଙ୍କର ଏହିଭଳି ନିୟମବହିର୍ଭୂତ କାର୍ଯ୍ୟ ସହିପାରିଲେନି ନିର୍ଭୀକ ଗୌରୀଶଙ୍କର । ସେ ସଙ୍ଗେ ସଙ୍ଗେ ସରକାରଙ୍କ ଦୃଷ୍ଟିକୁ ଆଣିଲେ ଆର୍ମିଷ୍ଟ୍ରଙ୍ଗ୍‌ଙ୍କ ଅନ୍ୟାୟ ଓ ଅଶୋଭନୀୟ କାର୍ଯ୍ୟ ସମ୍ବନ୍ଧରେ । ଘଟଣାର ତଦନ୍ତ ହେଲା । ଆର୍ମିଷ୍ଟ୍ରଙ୍ଗ୍ ଦୋଷୀ ବୋଲି ପ୍ରମାଣିତ ହେଲେ । ଗୌରୀଶଙ୍କରଙ୍କୁ କ୍ଷମାଭିକ୍ଷା କଲେ । ସଦୟ ଗୌରୀଶଙ୍କର କ୍ଷମା ଦେଇଥିଲେ ତାଙ୍କୁ ।

Digitized by srujanika@gmail.com

ଅଦାଲତରେ ଅନୁବାଦକ କାର୍ଯ୍ୟ କରୁଥିଲାବେଳେ ମଧ୍ୟ ଗୌରୀଶଙ୍କର ନିର୍ଭୀକତା ପ୍ରଦର୍ଶନ କରିଥିଲେ । ସେ ସମୟରେ କଟକ ନଗରୀରେ ଥିଲେ ଧନାନାଥ ବନ୍ଦ୍ୟୋପାଧ୍ୟାୟ ନାମକ ଜଣେ ସ୍ୱାଧୀନ-ଚେତା ସମାଲୋଚକ । ସେତେବେଳେ ଜିଲ୍ଲା ମେଜେଷ୍ଟ୍ରର ଥିଲେ ଟମ୍ସ ସାହେବ । ତାଙ୍କ କାର୍ଯ୍ୟକଳାପ ସମ୍ବନ୍ଧରେ ସମାଲୋଚନା କରିଥିବାରୁ ଧନାନାଥଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବାପାଇଁ ସୁଯୋଗ ଖୋଜି ବୁଲୁଥିଲେ ଟମ୍ସ । ସୁଯୋଗ ମିଳିଗଲା ତାଙ୍କୁ ଅଳ୍ପ ଦିନ ଭିତରେ । ଧନାନାଥ ବନ୍ଦ୍ୟୋପାଧ୍ୟାୟ କେତେଗୁଡ଼ିଏ ଲିଖିତ ଅଭିଯୋଗ କଲେ କଟକର ଜମିଦାର ଲକ୍ଷ୍ମୀନାରାୟଣ ରାୟ-ଚୌଧୁରୀଙ୍କ ବିରୁଦ୍ଧରେ ଜିଲ୍ଲା ମେଜେଷ୍ଟ୍ରର ଟମ୍ସ ସାହେବଙ୍କ ଅଦାଲତରେ । ସେତେବେଳେ ଲକ୍ଷ୍ମୀନାରାୟଣଙ୍କ ପୁଅ କାର୍ତ୍ତିକ ଚନ୍ଦ୍ର କାମ କରୁଥିଲେ ଟମ୍ସ ସାହେବଙ୍କ ଅଧୀନରେ । ସେ ସେହି ଅଭିଯୋଗଗୁଡ଼ିକ କାର୍ତ୍ତିକ ଚନ୍ଦ୍ରଙ୍କୁ ଗୋପନରେ ଦେଖାଇ ତାଙ୍କୁ ପରାମର୍ଶ ଦେଲେ ଧନାନାଥଙ୍କ ବିରୁଦ୍ଧରେ ମାନହାନି ମୋକଦ୍ଦମା କରିବା ପାଇଁ । ତାଙ୍କ ପରାମର୍ଶ ଅନୁଯାୟୀ ତାଙ୍କ ଅଦାଲତରେ ମାନହାନି ମୋକଦ୍ଦମା କରାଗଲା ଧନାନାଥଙ୍କ ବିରୁଦ୍ଧରେ । ସେ ତାହା ଏକତରଫା ବିଚାର କରି ହୁକୁମ ଦେଲେ ଧନାନାଥଙ୍କୁ ଦୁଇବର୍ଷ ସଶ୍ରମ କାରାଦଣ୍ଡ ।

ଏହି ସମ୍ବାଦ ବିଜୁଳି ବେଗରେ ଖେଳିଗଲା ଚାରିଆଡ଼େ । ଗୌରୀଶଙ୍କରଙ୍କ କାନରେ ମଧ୍ୟ ପଡ଼ିଗଲା ଏହି ସମ୍ବାଦ । ଶୁଣିବା-କ୍ଷଣି ନିର୍ଭୀକ ଓ ନ୍ୟାୟବାଦୀ ଗୌରୀଶଙ୍କର ଥୟଧରି ରହି ପାରିଲେନି ଆଉ । ସେ ସଙ୍ଗେ ସଙ୍ଗେ ଅତି ସାହସର ସହିତ ଦୌଡ଼ିଗଲେ ଜଜ୍ ସାହେବଙ୍କ ନିକଟକୁ । ଯେଉଁଠି ସେ ପ୍ରାର୍ଥନା କଲେ ଧନାନାଥଙ୍କୁ ଜାମିନରେ ଛାଡ଼ିବାପାଇଁ, ଆଉ ସଙ୍ଗେ ସଙ୍ଗେ

Digitized by srujanika@gmail.com

ଅପିଲ କରାଇଦେଲେ ବମ୍ସ ସାହେବଙ୍କ ଘନାନାଥଙ୍କ ପ୍ରତି କରା-ଯାଇଥିବା ଅନ୍ୟାୟ ବିରୁଦ୍ଧରେ । ଫଳରେ ମୋକଦ୍ଦମାର ପୁନଃବିଚାର ହେଲା । ଘନାନାଥ ସମ୍ପୂର୍ଣ୍ଣ ନିର୍ଦ୍ଦୋଷୀ ବୋଲି ପ୍ରମାଣିତ ହୋଇ କାରାଦଣ୍ଡରୁ ନିଷ୍କୃତି ପାଇଲେ । ଆଉ ଲଜ୍ଜିତ ହେଲେ ବମ୍ସ ସାହେବ ଅତି ବେଶୀ ମାତ୍ରାରେ ।

ସର୍ବଗ୍ରାସୀ ନଅଙ୍କ ଦୁର୍ଭିକ୍ଷ ଯୋଗୁ ଭାଙ୍ଗିଗଲା ଓଡ଼ିଶାର ମେରୁଦଣ୍ଡ । ଏହାର ସୁଯୋଗ ନେଇ ବଙ୍ଗୀୟ ପଦସ୍ଥ ଲୋକେ ଚେଷ୍ଟା କଲେ ଓଡ଼ିଆ ଲିପି ଭାଷାକୁ ସମ୍ପୂର୍ଣ୍ଣ ରୂପେ ନିର୍ମୂଳ କରିଦେଇ ତା ସ୍ଥାନରେ ବଙ୍ଗଳା ଭାଷା ପ୍ରଚଳନ କରିବାପାଇଁ । ଗୌରୀଶଙ୍କର ଏହା ସହ୍ୟ କରିପାରିଲେନି । ସେ ସଙ୍ଗେ ସଙ୍ଗେ ପ୍ରତିବାଦ କଲେ ଏଣି ମନୋବୃତ୍ତିର ନିଜ ସମ୍ପାଦିତ ଉତ୍କଳ ଦୀପିକାରେ । ତାଙ୍କ ସହିତ ତାଳ ଦେଲେ ଓଡ଼ିଶାର ଅନ୍ୟସବୁ ନେତାମାନେ । ଫଳରେ ବଙ୍ଗାଳୀ-ମାନଙ୍କର ଚେଷ୍ଟା ପଣ୍ଡ ହୋଇଗଲା । ଏହାପରେ ରାଧାନାଥ ରାୟ, ମଧୁସୂଦନ ରାଓ, ଫକୀରମୋହନ ସେନାପତି, ପ୍ୟାରୀମୋହନ ଆଚାର୍ଯ୍ୟ, ଗୋବିନ୍ଦ ରଥ, ବଳରାମ ଦାସ, ଗୋପାଳବଲ୍ଲଭ ଦାସ, ରାମଶଙ୍କର ରାୟ ପ୍ରଭୃତି ଖ୍ୟାତନାମା ସାହିତ୍ୟିକମାନେ ନିଜ ନିଜର ଲେଖମା ରଚନା କରି ଅଭିବୃଦ୍ଧି ଘଟାଇଲେ ଓଡ଼ିଆ ସାହିତ୍ୟର ।

ଗୌରୀଶଙ୍କରଙ୍କର ପାରିବାରିକ ଜୀବନ ଥିଲା ଅତି ଅଶାନ୍ତି-ମୟ । ପିତା, ଦୁଇଜଣ ଶିଶୁପୁତ୍ର, ପ୍ରାଣାଧିକା ପତ୍ନୀ ଏବଂ ଦୁଇଜଣ ସହୋଦରଙ୍କୁ ହରାଇଥିଲେ ସେ; ତଥାପି ସେ ଅବିଚଳିତ ରହି ନିଜକୁ ନିୟୋଜିତ କରିଥିଲେ ଜନସେବାରେ । ତାଙ୍କର ଚେଷ୍ଟାରେ ୧୯୦୪ ମସିହାରେ ଟାଉନହଲ୍ ନିର୍ମିତ ହୋଇଥିଲା କଟକ

Digitized by srujanika@gmail.com

ସହରରେ । ତାଙ୍କର ଉଦ୍ୟମ ଯୋଗୁ ସର୍ବସାଧାରଣ ବ୍ୟବହାର କରି-ପାରିଲେ ସେହି ଟାଉନ ହଲ୍‌କୁ ।

ଗୌରୀଶଙ୍କର ଥିଲେ ଜଣେ ଅସାଧାରଣ ସଂସ୍କାରକ । ଜନ-ସାଧାରଣଙ୍କ ମନରୁ କୁସଂସ୍କାର ଦୂର କରାଇ ଶୁଦ୍ଧବାଦ ଗଠନ କରିବା ଥିଲା ତାଙ୍କର ଅନ୍ୟତମ ଲକ୍ଷ୍ୟ । ସେ କଟକରେ ବ୍ରାହ୍ମସମାଜ ପ୍ରତିଷ୍ଠା କରି ସମାଜରେ ଆଣିପାରିଥିଲେ ବିରାଟ ସଂସ୍କାର ।

ସେ କାଳରେ ବିଧବାମାନଙ୍କୁ ଗୃହ କୋଣରେ ସାରାଜୀବନ ଦୁଃଖରେ କଟାଇବାକୁ ପଡୁଥିଲା । ବିଧବାଶ୍ରମ ଖୋଲାଇ ସେଥିରେ ସେମାନଙ୍କୁ ରଖାଇବା ଓ ଶିକ୍ଷାଦାନ କରାଇବା ବ୍ୟବସ୍ଥା କଲେ ଗୌରୀଶଙ୍କର । ତାଙ୍କ ନାତୁଣୀ ଶୈଳବାଳା ଅତି ଅଳ୍ପ ବୟସରେ ବିଧବା ହୋଇଯିବାରୁ ସେ ତାଙ୍କୁ ବାଳିକା ସ୍କୁଲରେ ପଢ଼ାଇଲେ । ତାଙ୍କର ଏହିଭଳି କାର୍ଯ୍ୟକଳାପକୁ ସମାଜବିରୋଧୀ କାର୍ଯ୍ୟକଳାପ ରୂପେ ଗ୍ରହଣ କରାଗଲା ଏବଂ ତାଙ୍କୁ କାୟସ୍ଥ ସମାଜରୁ ସମାଜଚ୍ୟୁତ କରାଗଲା ଏକବର୍ଷ ପାଇଁ । ଏଥିରେ ବିଚଳିତ ହୋଇ ନିଜର ମତ ବଦଳାଇଲେ ନାହିଁ ଗୌରୀଶଙ୍କର । ବରଂ ଦ୍ୱିଗୁଣ ଉତ୍ସାହରେ ଲାଗିପଡ଼ିଲେ ସମାଜର ସଂସ୍କାର କରିବାପାଇଁ ।

ତାଙ୍କ ଜୀବନବ୍ୟାପୀ ସାଧନା, କର୍ତ୍ତବ୍ୟନିଷ୍ଠା ଓ ଆତ୍ମୋତ୍ସର୍ଗର ପୁରସ୍କାର ସ୍ୱରୂପ ୧୯୧୬ ଖ୍ରୀଷ୍ଟାବ୍ଦରେ ତତ୍‌କାଳୀନ ଇଂରେଜ ସରକାର ତାଙ୍କୁ ଭୂଷିତ କରାଇଦେଲେ ରାୟବାହାଦୁର ଉପାଧିରେ । ଏହି ସମ୍ମାନ କିନ୍ତୁ ବେଶୀଦିନ ଭୋଗ କରିପାରିଲେନି ଗୌରୀଶଙ୍କର । ୧୯୧୭ ମସିହା ମାର୍ଚ୍ଚ ମାସ ୭ ତାରିଖ ରାତି ସାଢ଼େ ନଅଟାବେଳେ ଶେଷନିଶ୍ୱାସ ତ୍ୟାଗକଲେ ସେ ଦାୟାଦମାନଙ୍କ ହାତରେ ତାଙ୍କର ସମସ୍ତ କାର୍ଯ୍ୟ ଛାଡ଼ିଦେଇ । ତାଙ୍କ ମୃତ୍ୟୁ ଫଳରେ ଓଡ଼ିଶାରେ

Digitized by srujanika@gmail.com

ଗୋଟିଏ କର୍ମମୟ ଜୀବନର ଅବସାନ ଘଟିଲା ସତ ; କିନ୍ତୁ ଯେତେ-ଦିନଯାଏଁ ଟାଉନହଲ୍, କଟକର ବ୍ରାହ୍ମ ମନ୍ଦିର ଓ କାୟସ୍ଥ ଛାତ୍ରାବାସ ମୁଣ୍ଡଟେକି ରହିଥିବ ସେତେଦିନଯାଏଁ ତାଙ୍କର ଅଶରୀର ଆତ୍ମା ପ୍ରେରଣା ଦେଉଥିବ ଏହି ଜାତିକୁ । ଓଡ଼ିଆ ଜାତିକୁ ।



# ଜନସେବୀ ଗୋବିନ୍ଦ ରଥ

ଆମ ଜନ୍ମଭୂମି ଓଡ଼ିଶାରୁ ଯେଉଁ କେତେଜଣ ଅମ୍ଳାନ ଅନ୍ଧକାର ଦୂର କରି ଏହି ଦେଶବାସୀଙ୍କ ପ୍ରାଣରେ ସର୍ବପ୍ରଥମ ନବ-ଜାଗରଣ ଆଣିଥିଲେ, ସେମାନଙ୍କ ମଧ୍ୟରେ ବାଙ୍କୀର ଗୋବିନ୍ଦ ରଥ ଜଣେ ।

ଗୋବିନ୍ଦ ରଥ ଜନ୍ମଗ୍ରହଣ କରିଥିଲେ ୧୮୪୮ ମସିହା କାର୍ତ୍ତିକ ଶୁକ୍ଲପକ୍ଷ ନାଗଚତୁର୍ଥୀ ଦିନ ବାଙ୍କୀ ରାଇଜର ପାଟପୁର ଗ୍ରାମରେ ଗୋଟିଏ କୁଳୀନ ବ୍ରାହ୍ମଣ ପରିବାରରେ । ବାଙ୍କୀ ସେତେବେଳେ ଗୋଟିଏ ସ୍ୱତନ୍ତ୍ର ରାଜ୍ୟ ହୋଇଥିଲା ଏବଂ ଗୋବିନ୍ଦଙ୍କର ପୂର୍ବପୁରୁଷ ମୃତ୍ୟୁଞ୍ଜୟ ରଥ ନିଜର ଗୁଣବଳରେ ସ୍ଥାନ ପାଇଥିଲେ ବାଙ୍କୀ ରାଜାଙ୍କ ଦରବାରରେ ; ତେଣୁ ସେ ନିଜ ଗ୍ରାମ ଗଞ୍ଜାମ ଜିଲ୍ଲାର ମଧୁସୂଦନପୁର ଛାଡ଼ି ସ୍ଥାୟୀଭାବରେ ବସବାସ କରିବାକୁ ଲାଗିଲେ ବାଙ୍କୀ ରାଇଜର ପାଟପୁର ଗ୍ରାମରେ । ବଳଭଦ୍ର ରଥଙ୍କ ପୁତ୍ର ଅପର୍ତ୍ତି ରଥ ଥିଲେ ଗୋବିନ୍ଦଙ୍କର ପିତାମହ । ତାଙ୍କ ପିତା ଦୀନବନ୍ଧୁ ରଥଙ୍କର ଅକାଳ ବିୟୋଗ ହେବା ଯୋଗୁଁ ଗୋବିନ୍ଦ ଏବଂ ତାଙ୍କ ଭାଇ ରାମଚନ୍ଦ୍ରଙ୍କର ଲାଳନପାଳନ ଦାୟିତ୍ୱ

Digitized by srujanika@gmail.com

ପଡ଼ଯାଇଥିଲା ପିତାମହ ଅପର୍ତ୍ତି ରଥ ଏବଂ ଗୋବିନ୍ଦଙ୍କର ବିଧବା ମାତାଙ୍କ ଉପରେ ।

ପିତାମହ ଅପର୍ତ୍ତି ରଥଙ୍କର ବିଶେଷ ନଜର ଥିଲା ଗୋବିନ୍ଦଙ୍କ ଉପରେ । ବିଦ୍ୟାଳୟରେ ଭର୍ତ୍ତିହେବା ବୟସ ଗୋବିନ୍ଦଙ୍କର ହେବାକ୍ଷଣି ତାଙ୍କୁ ଭର୍ତ୍ତି କରିଦେଲେ ଗ୍ରାମ ପାଠଶାଳାରେ । ସେଇଠି ଗୋବିନ୍ଦ କିଛିଦିନ ପଢ଼ିବା ପରେ ଅପର୍ତ୍ତି ରଥଙ୍କୁ ଛତାବର ଗ୍ରାମରେ କିଛିଦିନ ରହିବାକୁ ପଡ଼ିଲା । ନାତିକୁ ନିଜ ପାଖରୁ ଦୂରରେ ରଖିଲେ କାଳେ ସେ ପାଠ ପ୍ରତି ମନ ଦେବ ନାହିଁ ଏହି ଆଶଙ୍କା କରି ଅପର୍ତ୍ତି ରଥ ଗୋବିନ୍ଦଙ୍କୁ ନେଇଗଲେ ନିଜ ସାଙ୍ଗରେ । ଛତାବରର ପାଠଶାଳାରେ ଲେଖାଗଲା ଗୋବିନ୍ଦଙ୍କର ନାମ । ଅଳ୍ପ ଦିନ ମଧ୍ୟରେ ତୀକ୍ଷ୍ଣ ମେଧାବୀ ଗୋବିନ୍ଦ ଆୟତ୍ତ କରିପାରି- ଥିଲେ ପାଠଶାଳାର ସମସ୍ତ ପାଠ୍ୟ ବିଷୟ । ତାଙ୍କର ସେଇଠି ପାଠ ଶେଷହେବା ପରେ ପରେ ସ୍ୱର୍ଗାରୋହଣ କଲେ ପଣ୍ଡିତ ଅପର୍ତ୍ତି ରଥ । ପିତାମହଙ୍କୁ ହରାଇବା ପରେ ଗୋବିନ୍ଦ ନିଜକୁ ଅସହାୟ ମନେକଲେ ଏବଂ ନିଜର ଭବିଷ୍ୟତ ଜୀବନ ଅନ୍ଧକାରମୟ ହେବ ବୋଲି ଭାବି ଅତିଶୟ ଦୁଃଖିତ ହେଲେ ।

ଈଶ୍ୱରଙ୍କ ଲୀଳା ଅତି ବିଚିତ୍ର । ମଣିଷକୁ ପରୀକ୍ଷା କରିବା ପାଇଁ କେବେକେବେ ସେ ସୃଷ୍ଟି କରିଥା'ନ୍ତି ନାନାପ୍ରକାର ବିପଦ ; କିନ୍ତୁ ଯାହାକୁ ସେ ଯାହା ଦେବାକଥା ତାହା ସବୁ ଦିଅନ୍ତି ଶେଷରେ । ଈଶ୍ୱର ଚାହୁଁଥିଲେ ଗୋବିନ୍ଦ ରଥ ଜ୍ଞାନୀ ହେବେ ; ତେଣୁ ତାଙ୍କର ଏହି ଦୁର୍ଦ୍ଦିନରେ ସେ ତାଙ୍କୁ କଲେ ସାହାଯ୍ୟ । ତାଙ୍କ ପ୍ରତିଭା ପକାଇଦେଲେ ଚର୍ଚ୍ଚିକା ମାଇନର ସ୍କୁଲର ତଦାନ୍ତିନ ପ୍ରଧାନ ଶିକ୍ଷକ ଗୌରଗୋପାଳ ଭଟ୍ଟାଚାର୍ଯ୍ୟଙ୍କ କାନରେ । ଗୌରଗୋପାଳ

Digitized by srujanika@gmail.com

ବାବୁ ବୁଝିଁଲେ ଗୋବନ୍ଦଙ୍କୁ ଛାତ୍ରରୂପେ ଗ୍ରହଣ କରିବାପାଇଁ । ସେ ତାଙ୍କୁ ଡକାଇ ପଠାଇଲେ ।

ସେ କାଳରେ ଇତରତର ଜନସାଧାରଣ ବିଶେଷତଃ ରକ୍ଷଣଶୀଳ ଶାସନ-ବ୍ରାହ୍ମଣ-ଗୋଷ୍ଠୀ ବୀତଶ୍ରଦ୍ଧ ଥିଲେ ଅନ୍ତେବେଶି ମାହାରେ ଇଂରାଜୀ ଶିକ୍ଷାପ୍ରତି । ସେହି ଶିକ୍ଷା ଲାଭକଲେ ବ୍ରହ୍ମତ୍ୱ ଲୋପ ପାଇଯିବ ଏବଂ ଶିକ୍ଷାଲାଭ କରିବା ପିଲାମାନେ ନିଜ ନିଜର ଧର୍ମ ତ୍ୟାଗକରି ହୋଇଯିବେ ବିଧର୍ମୀ—ଏହି ଧାରଣା ଆତଙ୍କିତ କରିଦେଇଥିଲା ଲୋକମାନଙ୍କୁ; ତେଣୁ ନିଜ ନିଜ ସନ୍ତାନମାନଙ୍କୁ ଇଂରେଜୀ ଶିକ୍ଷା ଦେବାପାଇଁ ଅନିଚ୍ଛୁକ ଥିଲେ ବ୍ରାହ୍ମଣ ଗୋଷ୍ଠୀ । ଇଂରେଜୀ ପ୍ରତି ଲୋକଙ୍କର ଏତେ ଘୃଣାଭାବ ଥିଲା ଯେ, ସେମାନେ କଳ ତିଆରି କାଗଜରେ ଲେଖିବା ପାପବୋଲି ମନେକରୁଥିଲେ । ଯାହା ଲେଖିବାର କଥା ତାହା ସେମାନେ ଲେଖୁଥିଲେ ତାଳପତ୍ର ଉପରେ ଲେଖନ ସାହାଯ୍ୟରେ । ଇଂରେଜୀ ସ୍କୁଲ ବାଟ ଦେଇଗଲେ କାଳେ ପିଲାମାନେ ସେହି ଶିକ୍ଷାପ୍ରତି ଆକୃଷ୍ଟ ହୋଇ ପାପ ଅର୍ଜନ କରିବେ ଭାବି ଅଭିଭାବକମାନେ ନିଜ ନିଜ ପିଲାମାନଙ୍କୁ ସେହିଭଳି ସ୍କୁଲଠାରୁ ଦୂରରେ ରହିବାପାଇଁ ବରାବର ଉପଦେଶ ଦେଉଥିଲେ ; କିନ୍ତୁ ଗୋବନ୍ଦ ଥିଲେ ସ୍ୱାଧୀନଚେତା । କୁସଂସ୍କାର ଠାରୁ ଦୂରରେ ରହିବା ପାଇଁ ସେ ଚେଷ୍ଟା କରୁଥିଲେ ବରାବର ; ତେଣୁ ସେ ଲୋକମାନଙ୍କ ବାରଣ ପ୍ରତି ଭ୍ରୂକ୍ଷେପ ନକରି ନାମ ଲେଖାଇଲେ ଚର୍ଚ୍ଚିକା ମାଇନର ସ୍କୁଲରେ । କେବଳ ସେତିକି କରି ନୀରବ ରହିଲେ ନି ଗୋବନ୍ଦ । ନିଜର ସାଙ୍ଗମାନଙ୍କୁ ମଧ୍ୟ ପ୍ରବର୍ତ୍ତାଇ ଭର୍ତ୍ତି କରିଦେଲେ ସେହି ମାଇନର ସ୍କୁଲରେ ଗୋବନ୍ଦଙ୍କର ଏତାଦୃଶ କାର୍ଯ୍ୟ ସମାଜବିରୋଧୀ ବୋଲି ଲୋକେ ଗ୍ରହଣ କଲେ ଏବଂ ତାଙ୍କୁ ଏଥିପାଇଁ ବହୁତ

Digitized by srujanika@gmail.com

ଲାଞ୍ଛନା ଦେଲେ ; କିନ୍ତୁ ଲାଞ୍ଛନା ପ୍ରତି ଭ୍ରୂକ୍ଷେପ ନକରି ନିଜ କାମରେ ଆଗେଇବାକୁ ଲାଗିଲେ ଗୋବିନ୍ଦ ।

ଚର୍ଚ୍ଚିକା ସ୍କୁଲର ସମସ୍ତେ ଗୋବିନ୍ଦଙ୍କର ପ୍ରତିଭା ଦେଖି ଅତିଶୟ ଆଦର କଲେ ତାଙ୍କୁ । ଗୋବିନ୍ଦ ପଢ଼ାରେ ଆଦୌ ହେଳା କରୁନଥିଲେ । ମିନିଟିଏ ସମୟ ମଧ୍ୟ ବାଜେ କାମରେ ନଷ୍ଟ କରୁନଥିଲେ । ସେ ଥିଲେ ଅତି ଚତୁର । ଭୂଗୋଳ ଶିକ୍ଷାପାଇଁ ନିହାତି ଦରକାର ମାନଚିତ୍ର ; କିନ୍ତୁ ସେହି ସ୍କୁଲରେ ସେତେବେଳେ ଖଣ୍ଡିଏ ହେଲେ ମାନଚିତ୍ର ନ ଥିଲା । ଚତୁର ଗୋବିନ୍ଦ ନିଜର ବୁଦ୍ଧି ଖଟାଇ ଘର କାନ୍ଥରେ ଅଙ୍କନ କଲେ ମାନଚିତ୍ର । ସେହି ସମ୍ବାଦ ପହଞ୍ଚିଲା ସ୍କୁଲରେ । ପ୍ରଧାନ ଶିକ୍ଷକଙ୍କ ଅନୁରୋଧକ୍ରମେ ସେ ପ୍ରଥମେ ନିଜ ଶ୍ରେଣୀ ଗୃହ କାନ୍ଥରେ ଅଙ୍କନ କଲେ ମାନଚିତ୍ର । ତା' ପରେ ସେହିଭଳି ମାନଚିତ୍ର ଅଂକନ କରାଗଲା ବିଭିନ୍ନ ଶ୍ରେଣୀ-ଗୃହରେ । ପାଠ ପଢ଼ିବାବେଳେ ମଧ୍ୟ ସେ କୁସଂସ୍କାର ଦୂର କରିବା ପାଇଁ ବରାବର ଚେଷ୍ଟା କରୁଥିଲେ । ତାଙ୍କ ପ୍ରେରଣାରେ ଲୋକମାନେ କାଗଜରେ ଲେଖିବା ଦୋଷାବହ ନ ଭାବି ବରାବର ସେଥିରେ ଲେଖିବାକୁ ଆରମ୍ଭ କଲେ । ସବୁ ବିଷୟରେ ପ୍ରଥମସ୍ଥାନ ଲାଭକରି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ କୃତିତ୍ୱର ସହିତ ।

୧୯୬୯ ମସିହାରେ ନୂତନଭାବେ ପ୍ରତିଷ୍ଠିତ ହୋଇଥିଲା ନର୍ମାଲ ସ୍କୁଲ କଟକରେ । ସ୍କୁଲ ପ୍ରଥମେ ପ୍ରତିଷ୍ଠିତ ହୋଇଥିବାରୁ ଛାତ୍ରମାନଙ୍କୁ ସ୍କୁଲ ପ୍ରତି ଆକୃଷ୍ଟ କରିବାପାଇଁ କର୍ତ୍ତୃପକ୍ଷ ସେମାନଙ୍କୁ ମାସିକ ବୃତ୍ତି ଦିଆଯିବବୋଲି ଘୋଷଣା କଲେ । ଏହି ସମ୍ବାଦ ପାଇ ଗୋବିନ୍ଦ ପାଇଁ କଟକ ଆସିଲେ ନର୍ମାଲ ସ୍କୁଲରେ ନାମ ଲେଖେଇବାପାଇଁ । ସେଠାରେ ଅଧ୍ୟୟନ କଲେ ତିନିବର୍ଷ । ଏହି

Digitized by srujanika@gmail.com

ତିନିବର୍ଷଯାଏ ତାଙ୍କର ସେଇଠି କଟିଥିଲା ସୁନାମର ସହିତ । କି ଛାତ୍ର କି ଶିକ୍ଷକ ସମସ୍ତଙ୍କର ଆଦରଣୀୟ ହୋଇପାରିଥିଲେ ସେ ନିଜର ବ୍ୟକ୍ତିତ୍ୱ ବଳରେ । ଗୋବିନ୍ଦ ହେଉଛନ୍ତି ଏହି ବିଦ୍ୟାଳୟର ସର୍ବପ୍ରଥମ ପରୀକ୍ଷା ଉତ୍ତୀର୍ଣ୍ଣ ଛାତ୍ର ।

ଏହି ଟ୍ରେନିଂ ସ୍କୁଲରୁ ଉତ୍ତୀର୍ଣ୍ଣ ହେବାପରେ ଗୋବିନ୍ଦ ଚାହିଁଲେ ଚାକିରି କରି ପେଟପୋଷିବାପାଇଁ । କାରଣ ପୋଷି ହେବା ଭଳି ତାଙ୍କର କିଛି ସମ୍ବଳ ନଥିଲା । ସେ ଚାକିରି କରିବା ପାଇଁ ଚାହୁଁଥିବା କଥା ଲୋକେ ଜାଣିବା ପରେ ତାଙ୍କୁ ଅତି ଆଦରରେ ଡାକି ନେଇଗଲେ ପୁରୀ ସହରକୁ ସେଇଠି ଶିକ୍ଷକତା କରିବାପାଇଁ । ତାଙ୍କୁ ମାସିକ ମାତ୍ର ବାର ଟଙ୍କା ଦରମାରେ ନିଯୁକ୍ତ କରାଗଲା ; କିନ୍ତୁ ବାର ଟଙ୍କାରେ ସେ ଥିଲେ ଅତିଶୟ ସନ୍ତୁଷ୍ଟ । କାରଣ ସେକାଳରେ ସବୁ ଜିନିଷ ଅତିଶୟ ଶସ୍ତା ଥିଲା । ମାତ୍ର ଦୁଇ ତିନି ଟଙ୍କା ଖର୍ଚ୍ଚ କଲେ ଜଣେ ଲୋକ ଅତି ଆନନ୍ଦରେ ଚଳିପାରୁଥିଲା ଗୋଟିଏ ମାସ ।

ସେତିକିବେଳେ ଶିକ୍ଷାବିଭାଗୀୟ କର୍ତ୍ତୃପକ୍ଷ ପୁରୀ ସହରରେ ଖୋଲିଦେଲେ ଏକ ନୈଶ ବିଦ୍ୟାଳୟ । ଶ୍ରମଜୀବୀମାନଙ୍କୁ ରାତ୍ରରେ ଶିକ୍ଷାଦେବାପାଇଁ ସେହି ବିଦ୍ୟାଳୟରେ ଦରକାର ପଡ଼ିଲେ ଶିକ୍ଷକମାନେ । ଗୋବିନ୍ଦ ସେଇଠି ଶିକ୍ଷକତା କରିବାପାଇଁ ଆଗ୍ରହ ପ୍ରକାଶ କରିବାକ୍ଷଣି ତାଙ୍କୁ ନିଯୁକ୍ତ କରାଗଲା ସେଇଠି ମାସିକ ଚାରି ଟଙ୍କା ଦରମାରେ । ସେ ଦୁଇଟି ସ୍ଥାନରେ ଶିକ୍ଷକତା କରି ଉଭୟ ସ୍ଥାନରୁ ଦରମା ପାଇବା ଦେଖି ହିଂସାରେ ଜଳିଗଲେ ଅନ୍ୟମାନେ । ସେମାନଙ୍କ ସହିତ ଯୋଗଦେଲେ ରକ୍ଷଣଶୀଳମାନେ; ଯେଉଁମାନେ କି ଗୋବିନ୍ଦ ଆଣୁଥିବା ସଂସ୍କାରକୁ ଆଦୌ ପସନ୍ଦ କରୁନଥିଲେ । ମିଳିତ

Digitized by srujanika@gmail.com

ଚେଷ୍ଟାହେଲା ଗୋବନ୍ଧଙ୍କୁ ଅପମାନିତ କରାଇବା ଏବଂ ତାଙ୍କୁ ଉଭୟ ସ୍କୁଲରୁ ବିଦାୟ ଦେବା । ତାଙ୍କ ବିରୁଦ୍ଧରେ ଅଣାଗଲା ଅଭିଯୋଗ । ସେ ଦୁଇଟି ସ୍କୁଲରେ କାମ କରିବାଦ୍ଵାରା କୌଣସି ସ୍କୁଲରେ କାମ କରୁନାହାନ୍ତି, ଠିକକରି ଦରମା ନେଉଛନ୍ତି । ତାଙ୍କ ଚରିତ୍ର ଭଲ ନୁହେଁ ବୋଲି ମଧ୍ୟ ଅଭିଯୋଗ ଅଣାଗଲା । କର୍ତ୍ତୃପକ୍ଷ ଘଟଣାର ସତ୍ୟାସତ୍ୟ ଜାଣିବାପାଇଁ ଚଳାଇଲେ ଅନୁସନ୍ଧାନ । ଅତି ଗୋପନରେ କାହାକୁ ନ ଜଣାଇ ହଠାତ୍ ପରିଦର୍ଶନ କଲେ ସ୍କୁଲ ଦୁଇଟି । ଲକ୍ଷ୍ୟ-କଲେ ଅଭିଯୋଗ ସବୁ ମିଥ୍ୟା । ଗୋବନ୍ଧ ଅତିଶୟ କର୍ତ୍ତବ୍ୟପରାୟଣ । ତାଙ୍କ ଚରିତ୍ର ଅତି ଉତ୍କୃଷ୍ଟଧରଣର । ତାଙ୍କ ଶତ୍ରୁମାନଙ୍କର ଚକ୍ରାନ୍ତ ପଣ୍ଡ ହେବାପରେ ଗାନ କରିବାକୁ ଲାଗିଲେ ଗୋବନ୍ଧଙ୍କର ପ୍ରଶଂସା । କିନ୍ତୁ ସେହି ପ୍ରଶଂସାରେ ଭାସିଗଲେନି ଗୋବନ୍ଧ ।

ପୁରୀରେ ଶିକ୍ଷକତା କରୁଥିବା ବେଳେ ଗୋବନ୍ଧଙ୍କର କର୍ତ୍ତବ୍ୟ-ନିଷ୍ଠା ବ୍ୟାପିଗଲା ଚତୁର୍ଦ୍ଦିଗରେ । ସମସ୍ତଙ୍କ ମୁହଁରୁ ଶୁଣାଗଲା ତାଙ୍କର ଭୂୟସୀ ପ୍ରଶଂସା । ସେତିକିବେଳେ ଗୋଟିଏ କିରାଣି ଗୃକିରି ଖାଲିହେଲା କଟକରେ । ମାସିକ ଦରମାଥିଲା କୋଡ଼ିଏ ଟଙ୍କା । ଗୃକିରି ପାଇଁ ଡକାଗଲା ଗୋବନ୍ଧ ରଥଙ୍କୁ । ସେ ସେଇଠି ଯୋଗଦେଲେ ନିର୍ଦ୍ଦିଷ୍ଟ ଦିନ । ତାଙ୍କୁ ଦିଆଯାଇଥିବା କାର୍ଯ୍ୟ ସେ ଅତି ଦକ୍ଷତାର ସହିତ ସମ୍ପାଦନ କରି ହାକିମଙ୍କର ପ୍ରଶଂସାଭାଜନ ହୋଇଥିଲେ ; କିନ୍ତୁ ଗୋବନ୍ଧଙ୍କର ସ୍ୱାଧୀନଭାବ ଦେଖି ହାକିମ ପ୍ରମାଦ ଗଣିଲେ । ସେ ଚାହିଁଲେ ଗୋବନ୍ଧ କେମିତି ଚାଲିଯିବେ ତାଙ୍କ ଅଫିସରୁ । ଦିନେ ସେ ଗୋବନ୍ଧଙ୍କୁ ଡକାଇଆଣି ନିଜ ପାଖରେ ଅତି ଯତନରେ ବସାଇ ଏଣୁ ତେଣୁ ତାଙ୍କ ସହିତ ଗପ କଲାପରେ ତାଙ୍କର ଅସଲ ଉଦ୍ଦେଶ୍ୟ ସାଧନ ନିମନ୍ତେ ଗୋବନ୍ଧଙ୍କୁ କହିଲେ, "ଆପଣଙ୍କଭଳି ଜଣେ

Digitized by srujanika@gmail.com

ସ୍ୱାଧୀନଚେତା ଏହିଭଳି ଗୋଲାମଗିରି କରିବାଟା ମୂଁ ପସନ୍ଦ କରୁନ । ଗୋବିନ୍ଦ ସଙ୍ଗେ ସଙ୍ଗେ ଛାଡ଼ିଦେଲେ ସେହି ଚାକିରି । ଫଳରେ ଆନନ୍ଦିତ ହେଲେ ହାକିମ ତାଙ୍କଭଳି ଜଣେ ସ୍ୱାଧୀନଚେତାଙ୍କଠାରୁ ଅବ୍ୟାହତି ପାଇବା ଯୋଗୁ ଆଉ ଗୋବିନ୍ଦ ଆନନ୍ଦିତ ହେଲେ ଗୋଲାମଗିରିରୁ ରକ୍ଷାପାଇଥିବା ଯୋଗୁ ।

ଆଜିକାଲି କେବଳ ସାହିତ୍ୟ ନୁହେଁ ସବୁ ବିଷୟ ପଢ଼ାଯାଉଛି ଓଡ଼ିଆ ଭାଷାରେ; କିନ୍ତୁ ସେହି ସମୟରେ ଓଡ଼ିଆ ଭାଷାରେ ଉପଯୁକ୍ତ ପାଠ୍ୟ-ପୁସ୍ତକ ନଥିଲା କହିଲେ ଚଳେ । ଚାକିରିରୁ ଅବ୍ୟାହତି ନେବା ପରେ ପଣ୍ଡିତ ଗୋବିନ୍ଦ ଇଚ୍ଛାକଲେ ଓଡ଼ିଆ ଭାଷାରେ ପାଠ୍ୟ-ପୁସ୍ତକ ପ୍ରଣୟନ କରି ଓଡ଼ିଆ ଶିକ୍ଷାର ପ୍ରସାର କରିବେ । ପ୍ରଥମେ ସେ ଲେଖିଲେ ବର୍ଣ୍ଣବୋଧକ, ତା'ପରେ ଲେଖିଲେ ଅନ୍ୟସବୁ ପୁସ୍ତକ । ଓଡ଼ିଆ ଭାଷାରେ କେବଳ ଲେଖିଦେଲେ ତ ଚଳିବ ନାହିଁ, ଏଗୁଡ଼ିକୁ ପୁଣି ଲୋକମାନଙ୍କ ମଧ୍ୟରେ ପ୍ରଚାର କରିବାକୁ ହେବ । ଛାପିବାପାଇଁ ଦରକାର ଧନ । ଗୋବିନ୍ଦଙ୍କ ପାଖରେ ଧନ କାହିଁ ଯେ ସେ ବହି-ଛାପିବେ ? ପ୍ରଥମ ବହିଟି ଛାପିବାପାଇଁ ସେ ଭିକ୍ଷାକଲେ ବିଭିନ୍ନ ଲୋକଙ୍କଠାରୁ । ପ୍ରଥମ ବହିର ବିକ୍ରୟଲବ୍ଧ ଧନରେ ଛାପିଲେ ଦ୍ୱିତୀୟ ବହିଖଣ୍ଡିକ । ଏହିପରି ଗୋଟିଏ ପରେ ଗୋଟିଏ ଅନେକ ବହି ଛାପି ଓଡ଼ିଆ ଭାଷାର ପ୍ରସାର କରାଇଥିଲେ ଗୋବିନ୍ଦ । ତାଙ୍କର ଓଡ଼ିଆ ଭାଷାର ପ୍ରସାରପାଇଁ ଅକ୍ଳାନ୍ତ ଚେଷ୍ଟାଦେଖି କମିଶନର ଗୌରୀଶଙ୍କର ତାଙ୍କୁ ସାହାଯ୍ୟ କରିବାକୁ ଲାଗିଲେ ବରବର । ତାଙ୍କ ସାହାଯ୍ୟରେ ପୁସ୍ତକ ବ୍ୟବସାୟରେ ଆଶାତୀତ ଉନ୍ନତି କରିପାରିଥିଲେ ପଣ୍ଡିତ ଗୋବିନ୍ଦ ରଥ । ସରକାର ମଧ୍ୟ ତାଙ୍କର କେତେଖଣ୍ଡ ପୁସ୍ତକକୁ ପୁରସ୍କାର ଦେଇଥିଲେ ତାଙ୍କୁ ଉତ୍ସାହିତ କରିବାପାଇଁ ।

Digitized by srujanika@gmail.com

ଗୋବନ୍ଦ ପୁସ୍ତକ ବ୍ୟବସାୟକର ଅଜସ୍ର ଧନ ଉପାର୍ଜ୍ଜନ କରିବା ଦେଖି ଈର୍ଷାନ୍ୱିତ ହୋଇଗଲେ ଅନେକେ । ହେବା ସ୍ୱାଭାବିକ । ଏହା ତ ହେଲା ମଣିଷର ପ୍ରକୃତି । ତା'ପରେ ଅନ୍ୟମାନେ ମଧ୍ୟ ଓଡ଼ିଆ ପୁସ୍ତକ ଲେଖିବାକୁ ଆରମ୍ଭ କଲେ । ଗୁଡ଼ାଏ ବହି ଦୋକାନ ଖୋଲିଲା ଓଡ଼ିଆ ପୁସ୍ତକ ବିକ୍ରି କରିବାପାଇଁ । ଫଳରେ ଓଡ଼ିଆ ଭାଷା ଦିନକୁଦିନ ପ୍ରସାରିତ ହେବାକୁ ଲାଗିଲା ଅଧିକରୁ ଅଧିକ । ଏହି ପ୍ରସାରର ମୂଳ ବୀଜ ବପନ କରିଥିଲେ ଗୋବନ୍ଦ ରଥ—ଏହା ସମସ୍ତେ ସ୍ୱୀକାର କରିବେ ମୁକ୍ତ କଣ୍ଠରେ ।

ଗୋବନ୍ଦ ରଥଙ୍କ ପୁସ୍ତକମାନଙ୍କ ମଧ୍ୟରେ କବିତା କଳାପ ଅନ୍ୟତମ ଉତ୍କୃଷ୍ଟ ପୁସ୍ତକ । ଏହି ପୁସ୍ତକଟି ଏତେ ଉତ୍କୃଷ୍ଟ ହୋଇଥିଲା ଯେ, ଏହା ନିର୍ବାଚିତ ହୋଇଥିଲା ଛାତ୍ରବୃତ୍ତି ପରୀକ୍ଷାପାଇଁ ।

ଲେଖକ ହିସାବରେ ତାଙ୍କର ସୁନାମ ଦିନକୁଦିନ ବୃଦ୍ଧି ପାଇବା ଯୋଗୁ ଅନ୍ୟମାନେ ତାଙ୍କୁ ଦବାଇ ଦେବାପାଇଁ ଚେଷ୍ଟାକଲେ । ଗୋବନ୍ଦଙ୍କ ପୁସ୍ତକ ଅନୁକରଣରେ ଲେଖାଗଲା ଅନେକ ପୁସ୍ତକ । ସେଗୁଡ଼ିକ ଛପାଯାଇ ଶିକ୍ଷା ବିଭାଗରେ ଦାଖଲ କରାଗଲା ନିର୍ବାଚନ ପାଇଁ । କେବଳ ସେତିକରେ ଚୁପ ରହିଲେନି ଅନ୍ୟମାନେ । ପୁସ୍ତକ ଦାୟିତ୍ୱରେ ଥିବା କର୍ମଚାରୀମାନଙ୍କୁ ସନ୍ତୁଷ୍ଟ କରିବାକୁ ଲାଗିଲେ ନାନା ଉପାୟରେ । ଫଳରେ ଗୋବନ୍ଦଙ୍କର ଉତ୍କୃଷ୍ଟ ପୁସ୍ତକ ସବୁ ଉପେକ୍ଷା କରାଗଲା ଏବଂ ଅନ୍ୟମାନଙ୍କ ନିକୃଷ୍ଟ ପୁସ୍ତକ ସବୁ ବଛାଗଲା । ଏହି ଅନ୍ୟାୟ ବିଚାର ବିରୁଦ୍ଧରେ ଲେଖିଲେ ସାମ୍ବାଦିକ ଗୌରୀଶଙ୍କର ତାଙ୍କ ପତ୍ରିକା ଉତ୍କଳ ଦୀପିକାରେ । ତା'ପରେ ପରେ ଆରମ୍ଭ କରିଦେଲେ ଆନ୍ଦୋଳନ । ଏହି ଆନ୍ଦୋଳନ ଫଳରେ କ୍ରମେ

Digitized by srujanika@gmail.com

ଝଟମେ ଗୋବିନ୍ଦ ରଥଙ୍କ ବହି ପୁଣି ନିର୍ବାଚିତ ହେଲା ଏବଂ ନିକୃଷ୍ଟ ବହିସବୁ ଅଗ୍ରାହ୍ୟ କରାଗଲା ।

ଜନସାଧାରଣଙ୍କର ହିତସାଧନ କରିବାକୁ ସବୁବେଳେ ଉଦ୍ଗ୍ରୀବ ଥିଲେ ପଣ୍ଡିତ ଗୋବିନ୍ଦ ରଥ । ସେତେବେଳେ "ଉତ୍କଳଦୀପିକା" ନାମକ ପାକ୍ଷିକ ସମ୍ବାଦପତ୍ର ସମ୍ପାଦନ କରୁଥା'ନ୍ତି ପ୍ୟାରୀମୋହନ ଆଚାର୍ଯ୍ୟ । ତାଙ୍କ ସହିତ ଯୋଗଦେଲେ ପଣ୍ଡିତ ଗୋବିନ୍ଦ ରଥ । ଉଭୟଙ୍କର ମିଳିତ ସମ୍ପାଦନା ଯୋଗୁଁ ଦିନକୁଦିନ ଅଧିକ ଜନପ୍ରିୟ ହୋଇପାରିଥିଲା ପତ୍ରିକାଟି । ଦିନେ ଉଭୟେ ବସି ସମ୍ପାଦକୀୟ ଲେଖି ଲେଖି ପ୍ରସ୍ତାବ ଉଠିଲା କଟକରେ ଗୋଟିଏ ବିଦ୍ୟାଳୟ ପ୍ରତିଷ୍ଠା କରିବାପାଇଁ । ତା'ପରେ ପ୍ରତିଷ୍ଠିତ ହେଲା ଗୋଟିଏ ସ୍କୁଲ କଟକରେ । ସେହି ସ୍କୁଲଟିର ନାମ ଦିଆଗଲା ପ୍ୟାରୀମୋହନ ଏକାଡ଼େମୀ । ଆଜିକାଲି ତାହା ପି. ଏମ୍. ଏକାଡ଼େମୀ ନାମରେ ପ୍ରସିଦ୍ଧ । ଏହି ବିଦ୍ୟାଳୟରେ ଅବୈତନିକ ଶିକ୍ଷକରୂପେ କାର୍ଯ୍ୟକଲେ ଗୋବିନ୍ଦ ରଥ । ସେହି ବିଦ୍ୟାଳୟରେ ଅନେକ ଦିନ ଶିକ୍ଷକତା କରି କେବଳ ପ୍ରଶଂସା ପାଇନଥିଲେ ; ପ୍ରତିଷ୍ଠାତା ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ଠାରୁ ଜନସାଧାରଣ ମଧ୍ୟ ତାଙ୍କର ଭୂରି ଭୂରି ପ୍ରଶଂସା କରିବାକୁ ଲାଗିଲେ ତାଙ୍କର କର୍ତ୍ତବ୍ୟପରାୟଣତା, ଛାତ୍ରବତ୍ସଳତା ଆଦି ଅନେକ ସଦ୍‌ଗୁଣ ଯୋଗୁଁ । ସେ ସ୍କୁଲ ଛାଡ଼ିବା ଦିନ କାନ୍ଦିଉଠିଲେ ସମସ୍ତେ । ସତେ ଯେପରି ଘରୁ କେହିଜଣେ ମରିଯାଇଛନ୍ତି ।

ଗୋବିନ୍ଦ ରଥ କେବଳ ଜଣେ ସମାଜସେବୀ ନଥିଲେ । ସେ ମଧ୍ୟ ଥିଲେ ଜଣେ ସ୍ପଷ୍ଟବାଦୀ, ନିର୍ଭୀକ ଓ ତେଜସ୍ୱୀ ବ୍ୟକ୍ତି । କୌଣସି

Digitized by srujanika@gmail.com

ପ୍ରକାର ଅନ୍ୟାୟ ଅତ୍ୟାଚାର ଦେଖିଲେ ତାଙ୍କ ରକ୍ତ ଫୁଟି ଉଠୁଥିଲା ଟକ୍‌ଟକ୍ । ସେ ସଙ୍ଗେ ସଙ୍ଗେ ପ୍ରତିବାଦ ଜଣାଇବାପାଇଁ ଭୁଲୁ ନଥିଲେ । ବାଙ୍କୀ ରାଜ୍ୟର ଶାସନ ଦାୟିତ୍ୱ ଗ୍ରହଣ କଲେ ଇଂରେଜ ସରକାର । ତା ଫଳରେ ଏହାର ଶାସନଭାର ନ୍ୟସ୍ତ କରାଗଲା ଜଣେ ତହସିଲଦାରଙ୍କ ଉପରେ । ତହସିଲଦାର ବୁଝୁଥିଲେ ନିଜର ସ୍ୱାର୍ଥ ଆଉ ଇଂରେଜମାନଙ୍କର ସ୍ୱାର୍ଥ । ସେ ସ୍ୱପ୍ନରେ ସୁଦ୍ଧା ଭାବୁ ନଥିଲେ ଜନସାଧାରଣଙ୍କ ସ୍ୱାର୍ଥ ସମ୍ବନ୍ଧରେ । ଦେଖିଲେ ବାଙ୍କୀର ଅଧିକାଂଶ ପ୍ରଜା ଅଜ୍ଞ ଓ ସରଳ । ପ୍ରତିବାଦ କରିବା ଶକ୍ତି ନାହିଁ ଏମାନଙ୍କର । ଯଦି ପ୍ରତିବାଦ କରିବା ଦରକାର ପଡ଼େ ତାହାହେଲେ ପ୍ରତିବାଦ ଜଣାଇପାରନ୍ତି ସେହି ଅଞ୍ଚଳର ମୁଷ୍ଟିମେୟ କେତେଜଣ ଶିକ୍ଷିତ ବ୍ୟକ୍ତି । ସେମାନଙ୍କୁ କଳେ-ବଳେ-କୌଶଳେ ଆୟତ୍ତ କରିପାରିଲେ ନିରଙ୍କୁଶ ଶାସନ ଚଳାଇହେବ ଭାବି ତହସିଲଦାର ନାନା ପ୍ରଲୋଭନ ଦେଖାଇ ନିଜର କରିନେଲେ ସେମାନଙ୍କୁ । ତା'ପରେ ଚାଲିଲା ପ୍ରଜାମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର, କରଭାର ଦିନକୁ ଦିନ ବୃଦ୍ଧି ପାଇବାକୁ ଲାଗିଲା । ଜବରଦସ୍ତ ଆଦାୟ କରାଗଲା । କର ଦେଇସାରିବାପରେ ଯାହା ବଳୁଥିଲା ସେଥିରେ ଦୁଇବେଳ ଦୁଇମୁଠା ଭାତ ଖାଇବା ସମ୍ଭବପର ହେଉନାହିଁ । ପ୍ରଜାମାନଙ୍କର, ଅତ୍ୟାଚାର କେବଳ ସେତିକରେ ଶେଷ ହେଉନାହିଁ । ଲୋକମାନଙ୍କୁ ବାଧ୍ୟ କରାଗଲା ବେଠି ଖଟିବାପାଇଁ, ସେମାନଙ୍କର ବିରୁଦ୍ଧରେ ଅଣାଗଲା ନାନାପ୍ରକାର ମିଥ୍ୟା ଅଭିଯୋଗ । ସେହି ଅଭିଯୋଗରୁ ଖଲାସ ହେବାପାଇଁ ତହସିଲଦାରଙ୍କୁ ଲାଞ୍ଚ ଦେଇ ସର୍ବସ୍ୱାନ୍ତ ହେଲେ ପ୍ରଜାଗଣ । ଚାରିଆଡ଼େ ଶୁଣାଗଲା ହାହା ହାହା ଡାକ ;: କିନ୍ତୁ ସେହି ଡାକଶୁଣି ପ୍ରତିବାଦ ଜଣାଇବା ଶକ୍ତି ନଥିଲା ବାଙ୍କୀର କୌଣସି ଲୋକର ।

Digitized by srujanika@gmail.com

କିନ୍ତୁ ସଂସାରରେ ତ ଧର୍ମ ବୋଲି ଗୋଟିଏ ଜିନିଷ ଅଛି, ଧର୍ମର ଗ୍ଲାନି ହେଲେ ଭଗବାନ ଚେଷ୍ଟାକରନ୍ତି ଲୋକମାନଙ୍କଦ୍ୱାରା ତାହାର ପ୍ରତିକାର କରାଇବାପାଇଁ । ଲୋକମାନଙ୍କର ଏହି ତ୍ରାହି ତ୍ରାହି ଡାକ ଶୁଣାଗଲା ଗୋବିନ୍ଦ ରଥଙ୍କ କାନ ପାଖରେ । ସତେ ଯେପରି ବାଙ୍କୀର ଜନସାଧାରଣ ତାଙ୍କ ପାଖରେ ଛିଡ଼ାହୋଇ ଜଣାଉଛନ୍ତି ସେମାନଙ୍କ ଦୁଃଖ । ଆଉ ସହି ପାରିଲେନାହିଁ ପଣ୍ଡିତ ଗୋବିନ୍ଦ । ଗୌରୀଶଙ୍କର ଓ ପ୍ୟାରୀମୋହନଙ୍କ ସହିତ ପରାମର୍ଶକରି ସେ ଚାଲିଲେ ବାଙ୍କୀ ପ୍ରଜାମାନଙ୍କର ଦୁର୍ଦ୍ଦଶାର କାରଣ ଅନୁସନ୍ଧାନ କରିବାପାଇଁ ।

ଗୋବିନ୍ଦ ବହୁତ ଲୋକଙ୍କୁ ଭେଟିଲେ । ବହୁତ ଲୋକଙ୍କଠାରୁ ଶୁଣିଲେ । ତା'ପରେ ଜାଣିପାରିଲେ ଯେ, ତଦାନିନ୍ତନ ତହସିଲଦାର ଶ୍ରୀନାଥ ବାବୁଙ୍କ ମନମୁଖୀ ଶାସନ ଓ ମାତ ପ୍ରକୃତ ହେଉଛି ବାଙ୍କୀ ପ୍ରଜାଙ୍କର ଦୁର୍ଦ୍ଦଶାର ମୂଳ କାରଣ । ସେ ଉତ୍କୋଚ ଗ୍ରହଣକରି ବଦଳାଇଦେଇ ପାରିଛନ୍ତି ତାଙ୍କର ଆର୍ଥିକ ଅବସ୍ଥା ସଂପୂର୍ଣ୍ଣ ଭାବରେ । ଧନରେ ଗଡ଼ୁଛନ୍ତି ସେ; ଆଉ ପ୍ରଜାମାନେ ଦିନରାତି ହାଡ଼ଭଙ୍ଗା ପରିଶ୍ରମ କରି ଦୁଇବେଳା କେବଳ ଭାତଗଣ୍ଡିଏ ମଧ୍ୟ ପାଇପାରୁନାହାନ୍ତି କି ଖଣ୍ଡିଏ ନୂଆ ଲୁଗା କିଣିବାପାଇଁ କ୍ଷମ ହେଉନାହାନ୍ତି । ନିର୍ଭୀକ ଗୋବିନ୍ଦ ଆଉ ଧୈର୍ଯ୍ୟଧରି ରହିପାରିଲେନି । ସେ ସେହି ତହସିଲ-ଦାରଙ୍କ ବିରୁଦ୍ଧରେ ଅଦାଲତରେ ଦାଏର କଲେ ଏକ ଉତ୍କୋଚ ଗ୍ରହଣ ମୋକଦ୍ଦମା । ତହସିଲଦାର ଭିତରିଆ ଚେଷ୍ଟାକଲେ ଜଜ୍‌ଙ୍କୁ ନିଜପକ୍ଷକୁ ଆଣିବାପାଇଁ; କିନ୍ତୁ ତାଙ୍କର ଚେଷ୍ଟା ବିଫଳ ହେଲା । ସେ ଏତେ ସବୁ ଗର୍ହିତ କାର୍ଯ୍ୟ କରିଯାଇଥିଲେ ଯେ, ସ୍ୱୟଂ ଭଗବାନ ମଧ୍ୟ ଚେଷ୍ଟାକଲେ ତାଙ୍କୁ ରକ୍ଷା କରିପାରିବେନି ; ତେଣୁ ବିଭାଗୀୟ

Digitized by srujanika@gmail.com

ଚଳିଲା ଆରମ୍ଭ ହେବାକ୍ଷଣି ନଜର ମାନ ସମ୍ମାନ ରକ୍ଷାକରିବା ଉଦ୍ଦେଶ୍ୟରେ ଆତ୍ମହତ୍ୟା କଲେ ।

ତହସିଲଦାରଙ୍କ ଯେଉଁମାନେ କୁକର୍ମର ସହଚର ଥିଲେ ସେମାନଙ୍କ ମଧ୍ୟରେ ମୁଖ୍ୟ ଥିଲେ ବଳରାମ କାନୁନଗୋ-ଏବଂ ବାଳମୁକୁନ୍ଦ କାନୁନ୍‌ଗୋ । ତହସିଲଦାରଙ୍କ ଆତ୍ମହତ୍ୟାପରେ ଗୋବିନ୍ଦଙ୍କର ଆଖି ପଡ଼ିଲା ଏହି ଦୁଇ କୁକର୍ମ ସହଚରଙ୍କ ଉପରେ ; କିନ୍ତୁ ଉଭୟେ କିଛି କମ୍ କିନ୍ତୁ ନଥିଲେ । ଗୋବିନ୍ଦଙ୍କ ବିରୁଦ୍ଧରେ ଏହିଭଳି ଷଡ଼ଯନ୍ତ୍ର କଲେ ଯେ, ଶେଷରେ ନିରୀହ ଗୋବିନ୍ଦଙ୍କୁ କାରାବରଣ କରିବାକୁ ପଡ଼ିଥିଲା ; କିନ୍ତୁ ନିସ୍ୱାର୍ଥ ଜନସେବୀ ଗୋବିନ୍ଦ ଆଦୌ ବିଚଳିତ ହେଲେ ନାହିଁ । ଏହି କାରାଦଣ୍ଡ ଆଦେଶ ଶୁଣି, ସେ ହସିହସି ପଶିଗଲେ କାରାଗାର ଭିତରେ । ସେଇଠି ସେ ରହିଲେନି ନୀରବରେ । ଅପରାଧୀମାନଙ୍କ ପ୍ରତି ହେଉଥିବା ଦୁର୍ବ୍ୟବହାରର ପ୍ରତିବାଦ ବରାବର କରିବାକୁ ଲାଗିଲେ ଗୋବିନ୍ଦ ; ତେଣୁ ସରକାର ତାଙ୍କୁ ମିଆଦ ନ ପୂରୁଣୁ ଖଲାସ କରିଦେଲେ କାରାଗାରରୁ ।

ପଣ୍ଡିତ ଗୋବିନ୍ଦ ଆଇନଶାସ୍ତ୍ର ପଢ଼ିନଥିଲେ । ତାଙ୍କ ପୂର୍ବପୁରୁଷ କେହି ଆଇନଜ୍ଞ ନଥିଲେ । ତଥାପି ଆଇନ୍ ବିଷୟରେ ତାଙ୍କ ଜ୍ଞାନ ବହୁତ ବେଶୀ ଥିଲା—ଏହା ମୁକ୍ତ କଣ୍ଠରେ ସ୍ୱୀକାର କରୁଥିଲେ ବଡ଼ ବଡ଼ ଆଇନଜ୍ଞମାନେ । ତାଙ୍କର ଯୁକ୍ତି କାଟିପାରୁନଥିଲେ କେହି । ଦେଶସେବା କରୁଥିବାଯୋଗୁ ତାଙ୍କ ବିରୁଦ୍ଧରେ ନାନାପ୍ରକାର ମୋକଦ୍ଦମା ସବୁ ଆଗତ ହେଉଥିଲା କଚେରୀରେ । ସେ ଏହି ମୋକଦ୍ଦମା କାର୍ଯ୍ୟ ନିଜେ ଚଳାଉଥିଲେ । ଓକିଲ ନିଯୁକ୍ତ କରିବା ଦୂରେଥାଉ କୌଣସି ଓକିଲ ସହିତ ପରାମର୍ଶ ମଧ୍ୟ କରୁନଥିଲେ । କେବଳ ଗୋଟିଏ ଷଡ଼ଯନ୍ତ୍ର ମୋକଦ୍ଦମା ବ୍ୟତୀତ ଅନ୍ୟସବୁ

Digitized by srujanika@gmail.com

ମୋକଦ୍ଦମାରେ ବିଜୟ ହାସଲ କରିଥିଲେ ଗୋବିନ୍ଦ । ସେ ଯୁକ୍ତି କଲାବେଳେ କଚେରୀରେ ଉଚ୍ଚ ହାସ୍ୟରୋଳ । ଥରେ ଗୋବିନ୍ଦଙ୍କ ବିରୁଦ୍ଧରେ ଅଣାଯାଇଥିବା ମୋକଦ୍ଦମାରେ ମୋକଦ୍ଦମାକାରୀଙ୍କ ପକ୍ଷର ଓକିଲ ଥିଲେ ନେତାଜୀ ସୁଭାଷଚନ୍ଦ୍ରଙ୍କ ପିତା କଟକର ବିଖ୍ୟାତ ଓକିଲ ରାୟବାହାଦୁର ଜାନକୀନାଥ ବୋଷ । ସେ ଗୋବିନ୍ଦ ରଥଙ୍କୁ ଜେରା କରିବା ବେଳେ ପଚାରିଲେ ଆପଣ ଘୋଡ଼ାଡ଼ିମ୍ବ ବହି ଲେଖି ପ୍ରକାଶ କରିଛନ୍ତି ? ସଙ୍ଗେ ସଙ୍ଗେ ଗୋବିନ୍ଦ ଉତ୍ତରଦେଲେ, "ମୁଁ ତ ଅନେକ ବହି ଲେଖିଛି । ସେଥିମଧ୍ୟରୁ ଆପଣଙ୍କ ମୁହଁରୁ ଘୋଡ଼ାଡ଼ିମ୍ବଟି କିପରି ବାହାରିଲା ?" ଏ ଜବାବ ଶୁଣି ଜାନକୀବାବୁ ବିସ୍ମିତ ଓ ନିର୍ବାକ । କଚେରୀରେ ଜମା ହୋଇଥିବା ଲୋକଙ୍କ ମଧ୍ୟରେ ଖେଳିଗଲା ହାସ୍ୟର ଲହରୀ । ଲୋକେ ଏତେ ବେଶି ହସିଲେ ଯେ, ହାକିମ କିଛି ସମୟ ଅଦାଲତ କାମ ବନ୍ଦ କରିବାପାଇଁ ବାଧ୍ୟ ହୋଇଥିଲେ ।

ଗୋବିନ୍ଦ ରଥ ଥିଲେ ଅତି ସ୍ପଷ୍ଟବାଦୀ । ଯାହାର ଯାହା ଦୋଷ ଦେଖୁଥିଲେ ତାହାସବୁ କହିଦେଉଥିଲେ ତାହାର ମୁହଁ ଉପରେ । ଅତିବଡ଼ ହାକିମ ମଧ୍ୟ ବାଦ୍ ଯାଉନଥିଲେ ଏଥିରୁ । ୧୯୧୩ ମସିହାରେ ଥରେ ଅଧ୍ୟାପକ ରାୟସାହେବ ଯୋଗେଶଚନ୍ଦ୍ର ରାୟ ମହୋଦୟ "ଇତିହାସରେ ନିମ" ଶୀର୍ଷକ ଗୋଟିଏ ଗବେଷଣାମୂଳକ ଉପାଦେୟ ବଳିଷ୍ଠ ସନ୍ଦର୍ଭ ବଙ୍ଗ ଭାଷାରେ ଲେଖି ତାହା ପଢ଼ିଥିଲେ ଉତ୍କଳର ସାହିତ୍ୟ ସମାଜର ଗୋଟିଏ ବିଶେଷ ଅଧିବେଶନରେ । ଆଜିକାଲି ଉତ୍କଳ ସାହିତ୍ୟ ସମାଜର ଗୋଟିଏ ସ୍ୱତନ୍ତ୍ର ଗୃହ କଟକରେ ଅଛି । ଏହାକୁ କହନ୍ତି, ଶ୍ରୀ ରାମଚନ୍ଦ୍ର ଭବନ ; କିନ୍ତୁ ସେତେବେଳେ କିଛି ସ୍ୱତନ୍ତ୍ର ଗୃହ ନଥିଲା । ଅଧିବେଶନ ସବୁ ବସୁଥିଲା ଟ୍ରେନିଂ ସ୍କୁଲ

Digitized by srujanika@gmail.com

ପ୍ରକୋଷ୍ଠ ମଧ୍ୟରେ । ଏହି ପ୍ରବନ୍ଧରେ ଅଧ୍ୟାପକ ମହାଶୟ କଟୂମନ୍ତବ୍ୟ ଦେଇଥିଲେ ଉତ୍କଳୀୟ ବ୍ରାହ୍ମଣମାନଙ୍କ ବିରୁଦ୍ଧରେ ।

ସେହି ସଭାରେ ଉପସ୍ଥିତ ଥିଲେ ପଣ୍ଡିତ ଗୋବିନ୍ଦ । ଅଧ୍ୟାପକ ମହାଶୟଙ୍କର କଟୂମନ୍ତବ୍ୟ ଆରମ୍ଭ ହେବା ସଙ୍ଗେ ସଙ୍ଗେ ଛିଡ଼ାହୋଇ ପଡ଼ି ପ୍ରତିବାଦ ଜଣାଇଲେ ଗୋବିନ୍ଦ—କହିଲେ ମହାଶୟ ଆପଣ ଜଣେ ବୈଜ୍ଞାନିକ । ବିଜ୍ଞାନ ବିଷୟରେ ଆପଣଙ୍କର ସମ୍ୟକ୍ ଜ୍ଞାନ ଥାଇପାରେ ; କିନ୍ତୁ ତାହା ବୋଲି ବ୍ରାହ୍ମଣସମାଜ ସମ୍ବନ୍ଧରେ ସମ୍ୟକ୍ ଜ୍ଞାନ ଅଛି ବୋଲି କହିଲେ କେହି ତାହା ଗ୍ରହଣ କରିବେ ନାହିଁ । ପ୍ରତିବାଦ ଜଣାଇବେ ସମସ୍ତେ । ଜଣେ ବଙ୍ଗାଳୀ ଦସ୍ୟୁ ହେଲେ ସବୁ ବଙ୍ଗାଳୀ କ'ଣ ଦସ୍ୟୁ ? ଆମେ ଯଦି ସେହି ବଙ୍ଗାଳୀ ଜଣଙ୍କର ନଜିର ଦେଇ କହୁ, ସବୁ ବଙ୍ଗାଳୀ ଦସ୍ୟୁ, ତା'ହେଲେ ଆପଣ କ'ଣ ତାହା ବରଦାସ୍ତ କରିବେ ? ମନେରଖନ୍ତୁ ଅଧ୍ୟାପକ ମହାଶୟ ଓଡ଼ିଆ ବ୍ରାହ୍ମଣମାନଙ୍କର ଚରିତ୍ର ବୁଝିବା ଶକ୍ତି ଆଦୌ ନାହିଁ ଆପଣଙ୍କର । କଥାରେ ଅଛି ଅଳ୍ପବିଦ୍ୟା ଭୟଙ୍କରୀ, ଆପଣଙ୍କ ଭଳି ଜଣେ ବ୍ୟକ୍ତି ଭଲଭାବରେ ନଜାଣି ନଶୁଣି ଗୋଟିଏ ବିଶିଷ୍ଟ ଜାତିକୁ ଏହିଭଳି ହୀନ ଭାବରେ ଆକ୍ରମଣ କରିବା ଗଭୀର ଦୁଃଖ ଓ ଲଜ୍ଜାର କଥା ।

ଗୋବିନ୍ଦ ରଥଙ୍କୁ ସମର୍ଥନ କଲେ ସେଠାରେ ଉପସ୍ଥିତ ଥିବା ଅନ୍ୟସବୁ ବିଜ୍ଞ ଲୋକେ । ଅଧ୍ୟାପକ ମହାଶୟ ହୃଦୟଙ୍ଗମ କଲେ ପ୍ରକୃତରେ ସେ ଭଲଭାବରେ ନଜାଣି ଗୋଟିଏ ଜାତି ବିରୁଦ୍ଧରେ କଟୂମନ୍ତବ୍ୟ ଦେଇ ମସ୍ତବଡ଼ ଭୁଲ କରିଛନ୍ତି । ସେ ସଙ୍ଗେ ସଙ୍ଗେ ଯୋଡ଼ ହସ୍ତରେ କ୍ଷମାଭିକ୍ଷା କରି ପ୍ରତ୍ୟାହାର କରିନେଲେ ତାଙ୍କର ସେହି ଅଭିମତ ଓଡ଼ିଆ ବ୍ରାହ୍ମଣଙ୍କ ସମ୍ବନ୍ଧରେ । ଗୋବିନ୍ଦଙ୍କ ଯୋଗୁ ସେ ନିଜର ଭୁଲ ସଂଶୋଧନ କରିପାରି ଥିବାରୁ କୃତଜ୍ଞତା ଜଣାଇଲେ ଗୋବିନ୍ଦଙ୍କ ପ୍ରତି ସେହି ସଭା ଗୃହରେ ।

Digitized by srujanika@gmail.com

ଗୋବିନ୍ଦ ରଥଙ୍କର ଘନିଷ୍ଠ ସମ୍ପର୍କ ଥିଲା ଆଧୁନିକ ଶିକ୍ଷିତ ସମାଜ ସହିତ । ତଥାପି ସେ ତୀକ୍ଷ୍ଣ ଦୃଷ୍ଟି ରଖିଥିଲେ ନିଜର କୌଳିକ ଐତିହ୍ୟ ପ୍ରତି । ସେ ଜନ୍ମଗ୍ରହଣ କରିଥିଲେ ଗୋଟିଏ ନୈଷ୍ଠିକ ଓଡ଼ିଆ ବ୍ରାହ୍ମଣ ପରିବାରରେ । ସେହି ନୈଷ୍ଠିକତାରୁ ସେ କେବେହେଲେ ହୋଇ ନଥିଲେ ବିଚ୍ୟୁତ । ପ୍ରତିଦିନ ସ୍ନାନ କରିସାରି ସନ୍ଧ୍ୟା ତର୍ପଣ ଓ ପୂଜା ପ୍ରଭୃତି ନିତ୍ୟକର୍ମ ଶେଷ ନହେବା ପର୍ଯ୍ୟନ୍ତ ଜଳଗ୍ରହଣ କରୁନଥିଲେ ଆଦୌ । ଯେତେବଡ଼ ଜରୁରୀ କାର୍ଯ୍ୟ ଥିଲେ ମଧ୍ୟ ସେହି କାର୍ଯ୍ୟ ବନ୍ଦ ରଖି ଆଗ ଶେଷ କରୁଥିଲେ ନିଜର ଦୈନନ୍ଦିନ ବିଧି, ସନ୍ଧ୍ୟା ତର୍ପଣ ଓ ପୂଜା ଆଦି । ତା'ପରେ ସେ କରୁଥିଲେ ଅନ୍ୟାନ୍ୟ ସବୁ କାର୍ଯ୍ୟ । ବ୍ରତ ଉପବାସ ସେ ପାଳନ କରୁଥିଲେ ଶାସ୍ତ୍ରୀୟ ପରମ୍ପରା ବିଧିରେ । ମୋଟ ଉପରେ କହିବାକୁ ଗଲେ ଆଧୁନିକ ସଭ୍ୟତା ତାଙ୍କୁ ଗ୍ରାସ କରିବାପାଇଁ ଶତଚେଷ୍ଟା କରିଥିଲେ ହେଁ ସ୍ପର୍ଶ ମଧ୍ୟ କରିପାରିନଥିଲା । ଗରିବ ଘରେ ଜନ୍ମଲାଭ କରିଥିଲେ ମଧ୍ୟ ନିଜର ବୁଦ୍ଧି ବିବେକ ବଳରେ ସେ ଉପାର୍ଜନ କରିଥିଲେ ଲକ୍ଷାଧିକ ଟଙ୍କା । ତଥାପି ବିଳାସ ବ୍ୟସନ ତାଙ୍କୁ ସ୍ପର୍ଶ କରି ନଥିଲା ଆଦୌ । ସେ ଆରମ୍ଭ କରିଥିଲେ ସରଳ ଓ ନିରାଡ଼ମ୍ବର ଜୀବନ । ସେହିଭଳି ଜୀବନ ସେ ଜୀବନତମାମ କଟାଇଥିଲେ ଶେଷ ନିଶ୍ୱାସ ତ୍ୟାଗ କରିବା ପର୍ଯ୍ୟନ୍ତ । ଗୋବିନ୍ଦ ରଥ ବିବାହ କରିଥିଲେ ପୁରୀଜିଲ୍ଲା ବୀରନରସିଂହପୁର ଶାସନରେ ଗୋଟିଏ କୁଳୀନ ପରିବାରରେ । ତାଙ୍କ ଭାର୍ଯ୍ୟା ଥିଲେ ଅତି ନୈଷ୍ଠିକ । ଉଭୟେ କିଛିଦିନ ଅତି ସୁଖମୟ ଦାମ୍ପତ୍ୟ ଜୀବନଯାପନ କଲେ ; କିନ୍ତୁ ଦୁଃଖର କଥା ଏହି ସୁଖମୟ ଦାମ୍ପତ୍ୟ ଜୀବନ ସ୍ଥାୟୀ ହୋଇଥିଲା ଅଳ୍ପକାଳ । ଗୋବିନ୍ଦଙ୍କର ଭାର୍ଯ୍ୟା ତାଙ୍କୁ ଏକାକୀ ଛାଡ଼ିଦେଇ ଚାଲିଗଲେ ବୈକୁଣ୍ଠପୁରକୁ । ସେତେବେଳେ ଯୁବକ ଥାଆନ୍ତି ଗୋବିନ୍ଦ । ବିଭିନ୍ନଆଡ଼ୁ

Digitized by srujanika@gmail.com

ବୃପ ପଣ୍ଡିତ ତାଙ୍କ ଉପରେ ଦ୍ୱିତୀୟ ବିବାହ କରିବା ପାଇଁ; କିନ୍ତୁ ପୁଣି ବିବାହ କଲେ ଜନସାଧାରଣଙ୍କ ଉପକାରପାଇଁ କାମ କରିବା ଅସୁବିଧାଜନକ ହେବ ଭାବି ସେ ସେହି ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରିଥିଲେ ସେତେବେଳେ । ସେ ଥିଲେ ଅପୁତ୍ରିକ; ତେଣୁ ପୁତ୍ରରୂପେ ଜଗନ୍ନାଥଙ୍କୁ ଗ୍ରହଣ କରିଥିଲେ ପୋଷ୍ୟପୁତ୍ର ରୂପେ । ନିଜର ସମସ୍ତ ସମ୍ପତ୍ତି ଟେକିଦେଇଥିଲେ ଜଗନ୍ନାଥଙ୍କ ହାତରେ ।

ହଠାତ୍ ଦିନେ ଗୋବିନ୍ଦ ପଡ଼ିଗଲେ ଜ୍ୱର ବେଗରେ । ଜ୍ୱର ବୃଦ୍ଧି ପାଇବାକୁ ଲାଗିଲା କ୍ରମେକ୍ରମେ । ସଙ୍ଗେ ସଙ୍ଗେ ତାଙ୍କର ଉପଯୁକ୍ତ ଚିକିତ୍ସା କରାଗଲା ଦକ୍ଷ ଚିକିତ୍ସକମାନଙ୍କ ଦ୍ୱାରା; କିନ୍ତୁ ଫଳ କିଛି ହେଲାନାହିଁ । ସାନଭାଇ ଏହି ଖବର ଶୁଣିବାକ୍ଷଣି ଦୌଡ଼ି ଆସିଲେ କଟକକୁ । ଜ୍ୱର ତ ଭଲ ହେଲ ନାହିଁ; କିନ୍ତୁ ତା ସହିତ ଆରମ୍ଭ ହୋଇଗଲା ଜ୍ୱରାତିସାର ରୋଗ । ଡକାଗଲା ଆହୁରି ବଡ଼ ବଡ଼ ଚିକିତ୍ସକମାନଙ୍କୁ । ଚତୁର ଗୋବିନ୍ଦ ଜାଣିପାରିଲେ ତାଙ୍କର ଅନ୍ତିମ ସମୟ ନିକଟ ହୋଇ ଆସିବା କଥା । ସେ ଔଷଧ ଆଉ ଖାଇଲେ ନାହିଁ । ୧୯୧୮ ମସିହା ମେ ମାସ ୨୮ ତାରିଖ ଦିନ ସେ ଛାଡ଼ିଲେ ଶେଷ ନିଶ୍ୱାସ । ସେତେବେଳକୁ ତାଙ୍କର ବୟସ ସତୁରି ବର୍ଷ ।

ଗୋବିନ୍ଦ ଚାଲିଗଲେଣି ଆଜକୁ ଅନେକ ବର୍ଷ ପୂର୍ବରୁ; କିନ୍ତୁ ତାଙ୍କର ସ୍ପଷ୍ଟବାଦିତା, ନିର୍ଭୀକତା, ପରୋପକାରିତା, ଆତ୍ମୋତ୍ସର୍ଗ ଆଦି ସଦ୍‌ଗୁଣ ତାଙ୍କୁ ଅମର କରି ରଖିଥିବ ସବୁଦିନପାଇଁ ଆମର ଏହି ଜନ୍ମଭୂମିରେ ।



Digitized by srujanika@gmail.com

# କାଞ୍ଚି ବିଜେତା ପୁରୁଷୋତ୍ତମଦେବ

ତୁମମାନଙ୍କ ମଧ୍ୟରୁ ଯେଉଁମାନେ ଆଷାଢ଼ ମାସ ଶୁକ୍ଳ ଦ୍ୱିତୀୟା ଦିନ ପୁରୀ ଯାଇଥିବ ସେମାନେ ନିଶ୍ଚୟ ଜଗନ୍ନାଥଙ୍କର ରଥଯାତ୍ରା ଦେଖିଥିବ ଓ ଲକ୍ଷ୍ୟ କରିଥିବ ଦଉଡ଼ି ରଥ ଉପରେ ବିଜେ ହେବା ଆଗରୁ ପୁରୀ ରାଜା ରଥଗୁଡ଼ିକୁ ସୁନା ଝାଡ଼ୁକାଠିରେ ଓଳାଇ ସଫା କରନ୍ତି । ତା'ପରେ ରଥ ଉପରେ ଚନ୍ଦନ ପାଣି ଛିଞ୍ଚନ୍ତି । ଏହାକୁ ଛେରାପହଁରା କୁହାଯାଏ । ପୁରୀ ରାଜା ଠାକୁରଙ୍କ ରଥରେ ଛେରାପହଁରା କରିବା ପରେ ଦଉଡ଼ି ରଥରେ ବିଜେ କରିବା ପ୍ରଥା ଅଛି । ସେହି ଛେରାପହଁରା ଦେଖି ଆଜକୁ ପ୍ରାୟ ପାଞ୍ଚ ଶହ ପଚାଶ ବର୍ଷ ପୂର୍ବେ ଦାକ୍ଷିଣାତ୍ୟର କାଞ୍ଚି ରାଜ୍ୟର ରାଜା ତତ୍‌କାଳୀନ ପୁରୁଷୋତ୍ତମଦେବଙ୍କୁ ଚଣ୍ଡାଳ ଆଖ୍ୟା ଦେଇ ଅପମାନିତ କରିଥିଲେ ; ଫଳରେ ଯୁଦ୍ଧ ହୋଇଥିଲା କାଞ୍ଚି ଓ ଓଡ଼ିଶା ମଧ୍ୟରେ ଅତି ଭୟଙ୍କର ଭାବରେ ।

ପୁରୁଷୋତ୍ତମଦେବ ଥିଲେ ଗଙ୍ଗ ବଂଶର ପ୍ରତିଷ୍ଠାତା କପିଳେନ୍ଦ୍ର ଦେବଙ୍କ ପୁତ୍ର । କପିଳେନ୍ଦ୍ର ଦେବଙ୍କ ଅଠରଗୋଟି ପୁତ୍ରଙ୍କ ମଧ୍ୟରେ ପୁରୁଷୋତ୍ତମ ଥିଲେ ସର୍ବକନିଷ୍ଠ । ଭାଇମାନଙ୍କ ମଧ୍ୟରେ ସେ ସର୍ବକନିଷ୍ଠ ହେଲେ ହେଁ ଗୁଣରେ ଥିଲେ ସର୍ବଶ୍ରେଷ୍ଠ ; ତେଣୁ ସମସ୍ତଙ୍କଠାରୁ ପିତାଙ୍କର ଆଦରଣୀୟ ଥିଲେ ପୁରୁଷୋତ୍ତମ । ଭାଇମାନେ ଯେତେବେଳେ ବିଳାସରେ ବୁଡ଼ି ରହୁଥିଲେ ସେତେବେଳେ ପୁରୁଷୋତ୍ତମ ତା'ଠାରୁ ଦୂରରେ ରହି ସମୟ କାଟୁଥିଲେ ପିତାଙ୍କ ଦରବାରରେ ପିତାଙ୍କ ପାଖରେ ବସି । ସେଇଠି ବସି ସେ ଲକ୍ଷ୍ୟ କରୁଥିଲେ ପିତାଙ୍କର ଶାସନ ପ୍ରଣାଳୀ । କେବଳ ସେତିକି

Digitized by srujanika@gmail.com

ନୁହେଁ, ପିତା ଯେତେବେଳେ ରାଜ୍ୟ ଜୟ କରିବାକୁ ଯାଆନ୍ତି ସେତେବେଳେ ପୁରୁଷୋତ୍ତମ ଯାଆନ୍ତି ତାଙ୍କ ସହିତ । ବିପକ୍ଷ ସେନା ସହ ସମ୍ମୁଖ ସମର କରି କାବୁ କରାଇଦିଅନ୍ତି ସେମାନଙ୍କୁ । ପୁତ୍ରର ଏହି ଅସୀମ ସାହସ, ଅଦ୍ଭୁତ ଧୈର୍ଯ୍ୟ ଓ ବିଚିତ୍ର ରଣକୌଶଳ ଦେଖି ବୃଦ୍ଧ କପିଳେନ୍ଦ୍ରଙ୍କ ପ୍ରାଣରେ ଅନୁଭବ କରନ୍ତି ଅପାର ଆନନ୍ଦ । ମନେମନେ ଭାବୁଥା'ନ୍ତି ତାଙ୍କ ହାତରେ ରାଜ୍ୟର ଶାସନ ଦାୟିତ୍ୱ ଅର୍ପଣ କରିଦେବା ପାଇଁ ; କିନ୍ତୁ ଗୁଣରେ ଶ୍ରେଷ୍ଠ ହେଲେ ମଧ୍ୟ ପୁରୁଷୋତ୍ତମ ଯେ, ବୟସରେ ସର୍ବକନିଷ୍ଠ । ସର୍ବକନିଷ୍ଠ ପୁତ୍ରଙ୍କ ହସ୍ତରେ ସିଂହାସନ ଅର୍ପଣ କଲେ ଅନ୍ୟସବୁ ଭାଇମାନଙ୍କ ମନରେ କୁହୁଳିବ ଅଶାନ୍ତିର ବହ୍ନି । ଆଉ ସେହି ବହ୍ନି ସୃଷ୍ଟି କରିବ ରାଜ୍ୟରେ ଅନ୍ତର୍ବିପ୍ଳବ ।

ଏହି ଅନ୍ତର୍ବିପ୍ଳବ ଛାରଖାର କରିଦେବ ସାରା ରାଜ୍ୟଟିକୁ । ତେବେ ଉପାୟ ? ମହାପ୍ରଭୁ ଜଗନ୍ନାଥଙ୍କ ଆଶ୍ରୟ ଗ୍ରହଣ ଛଡ଼ା ଅନ୍ୟ ଉପାୟ କିଛି ନାହିଁ ବୋଲି ଉପଲବ୍ଧି କଲେ କପିଳେନ୍ଦ୍ର ।

ମହାପ୍ରଭୁ ଜଗନ୍ନାଥଙ୍କ ଶ୍ରୀଚରଣରେ ଅଧା ପଡ଼ିଲେ ସେ । କିଛିଦିନ ନିର୍ଜନରେ ରହି ଅଧାପଡ଼ିବାପରେ ଶ୍ରୀଠାକୁର ତାଙ୍କୁ ସ୍ୱପ୍ନରେ ଜଣାଇଲେ, "ହେ ସମ୍ରାଟ ! ତୁମେ ଏତେ ଚିନ୍ତିତ କାହିଁକି ? ଉତ୍କଳର ଭଲମନ୍ଦପାଇଁ ଦାୟୀ ମୁଁ । କିଏ ରଜାହେଲେ ରାଜ୍ୟର ମଙ୍ଗଳ ହେବ ତାହା ମୁଁ ଜାଣେ । ଆସନ୍ତାକାଲି ତୁମେ ମୋତେ ଦର୍ଶନ କରିବାକୁ ଶ୍ରୀମନ୍ଦିରକୁ ଆସିବ—ଆସିଲାବେଳେ ସବୁ ପୁଅଙ୍କୁ ସାଙ୍ଗରେ ନେଇ ଆସିବ । ତୁମେ ଆସିଲାବେଳେ ତୁମର ପିଲାଙ୍କୁ ଯେଉଁ ରାଜପୁତ୍ର ଉଠାଇନେବେ ସେହିହିଁ ହେବ ଉତ୍କଳର ରଜା । ତାଙ୍କ କାନ୍ଧରେ ଆଶ୍ରୟ ନେବେ ଉତ୍କଳର ଲକ୍ଷ୍ମୀ ।

Digitized by srujanika@gmail.com

ରାତ ପାହିଲା, ଲୋକେ ଯେ ଯାହାର କାମରେ ବ୍ୟସ୍ତ ରହିଲେ ; କିନ୍ତୁ କପିଳେନ୍ଦ୍ର ବୁଡ଼ି ରହିଲେ ଚିନ୍ତାରେ । କେମିତି ସଂଧ୍ୟା ହେବ, ସେ କେମିତି ରାଜପୁତ୍ରମାନଙ୍କୁ ସଙ୍ଗରେ ନେଇ ଶ୍ରୀଠାକୁରଙ୍କର ଦର୍ଶନ କରିବାକୁ ଯିବେ, କାହା ଭାଗ୍ୟରେ ରାଜ୍ୟଲକ୍ଷ୍ମୀ ପ୍ରସନ୍ନା ହେବେ । ଏହିପରି ନାନା ଚିନ୍ତା ସ୍ଥାନ ପାଇଲା ତାଙ୍କ ମନରେ ଆଉ ଆଶଙ୍କା ହେଲା, କାଳେ ପୁରୁଷୋତ୍ତମଦେବ ରାଜା ହୋଇ ନ ପାରନ୍ତି । କାଳେ ରାଜ୍ୟଲକ୍ଷ୍ମୀ ତାଙ୍କର ଅନ୍ୟ କୌଣସି ପୁତ୍ରଙ୍କ କାଖରେ ବରମାଳା ହେବେ ?

ଦିନତମାମ ଅନ୍ନଜଳ ସ୍ପର୍ଶ କଲେନାହିଁ ମହାରାଜା କପିଳେନ୍ଦ୍ର ଦେବ । କେବଳ ଅପେକ୍ଷା କରି ରହିଲେ ସଂଧ୍ୟାପାଇଁ । କ୍ରମେ ସଂଧ୍ୟା ଆସିଲା । ମହାରାଜା ସବୁ ପୁଅଙ୍କୁ ଡକାଇଲେ ନିଜ ପାଖକୁ ଆଉ କହିଲେ, ତାଙ୍କ ସାଙ୍ଗରେ ଯାଇ ଠାକୁରଙ୍କ ସଂଧ୍ୟା ଆଳତି ଦର୍ଶନ କରିବାକୁ ପ୍ରସ୍ତୁତ ହୋଇ ଆସିବାପାଇଁ । ରାଜକୁମାରମାନେ କପିଳେନ୍ଦ୍ର ଦେବ ଏହିପରି ନିର୍ଦ୍ଦେଶ ଦେବାର କାରଣ ଜାଣିପାରିଲେ ନାହିଁ । କେବଳ ପିତାଙ୍କର ଆଦେଶ ପାଳନ କରିବା ଉଦ୍ଦେଶ୍ୟରେ ସଙ୍ଗେ ସଙ୍ଗେ ପ୍ରସ୍ତୁତ ହୋଇ ଆସି ପହଞ୍ଚିଗଲେ ପିତାଙ୍କ ନିକଟରେ ।

ପୁଅମାନଙ୍କୁ ନେଇ କପିଳେନ୍ଦ୍ର ଦେବ ଚାଲିଲେ ଶ୍ରୀମନ୍ଦିର ଆଡ଼କୁ । ମହାରାଜା ସବୁତକ ପୁଅଙ୍କୁ ନେଇ ଶ୍ରୀମନ୍ଦିରକୁ ଯିବା ଦୃଶ୍ୟ ଆଗରୁ ଦେଖିନାହାନ୍ତି କେହି ; ତେଣୁ ଏମାନଙ୍କୁ ଦେଖି ନାନା ପ୍ରକାର ଚିନ୍ତା ଖେଳିଗଲା ଲୋକଙ୍କ ମନରେ । ବେଳକୁବେଳ ଅତି ଭିଡ଼ ହେଲା ଅରୁଣସ୍ତମ୍ଭ ନିକଟରେ ଏହି ଦୃଶ୍ୟ ଦେଖିବାପାଇଁ ; କିନ୍ତୁ ମହାରାଜା ଓ ତାଙ୍କ ପୁତ୍ରମାନଙ୍କ ଗନ୍ତବ୍ୟପଥରେ ବାଧା ସୃଷ୍ଟି କଲେନାହିଁ କେହି ।

Digitized by srujanika@gmail.com

କପିଳେନ୍ଦ୍ରଦେବ ପହଞ୍ଚିଲେ ବାଇଶି ପାହାଚ ନିକଟରେ ପୁତ୍ରମାନଙ୍କୁ ନେଇ । ତା’ପରେ ସମସ୍ତେ ଚଢ଼ିବାକୁ ଲଗିଲେ ବାଇଶି ପାହାଚ । ଚଢ଼ିବାବେଳେ ହଠାତ୍ ମହାରାଜାଙ୍କ ଲମ୍ବିଥିବା କୁଞ୍ଚ ଗୋଡ଼ରେ ଛନ୍ଦିହୋଇ ଖସିପଡ଼ିଲା ତଳକୁ । ସଙ୍ଗେ ସଙ୍ଗେ ପୁରୁଷୋତ୍ତମ ସେହି କୁଞ୍ଚକୁ ଉଠାଇନେଲେ ତଳୁ । ଅନ୍ୟ ଭାଇମାନେ ତାହା ଦେଖିଲେ ମଧ୍ୟ ରହିଲେ ନ ଦେଖିଲାପରି ।

ଆଉ ଆଗେଇ ପାରିଲେନି କପିଳେନ୍ଦ୍ରଦେବ । ଜଣାପଡ଼ିଲା ସତେ ଯେପରି ତାଙ୍କର ପାଦଦ୍ୱୟ ଲଗି ରହିଯାଇଛି ଭୂଇଁ ଉପରେ ଅତି ଜୋର୍‌ରେ । ସେ ସେଠି ଛିଡ଼ାହୋଇ ପ୍ରାର୍ଥନାକଲେ କିଛିସମୟ ପ୍ରଭୁଙ୍କ ଉଦ୍ଦେଶ୍ୟରେ । ତା’ପରେ ଟାଣିନେଲେ ପୁରୁଷୋତ୍ତମଙ୍କୁ ନିଜ ଆଡ଼କୁ । ଟାଣିନେଇ ତାଙ୍କ ମୁଣ୍ଡ ଉପରେ ହାତରଖି ତାଙ୍କୁ ଜଣାଇଲେ ଆଶୀର୍ବାଦ । ଆଉ କହିଲେ, “ଧନ୍ୟ ବତ୍ସ ! ଧନ୍ୟ ତୁ ! ଯଥାସମୟରେ ତୋର ଉଜ୍ଜ୍ୱଳ ମସ୍ତକରେ ଶୋଭାପାଇବ ଗଜପତି ରାଜମୁକୁଟ—ଉତ୍କଳର ଭାଗ୍ୟବିଧାତା ସ୍ୱୟଂ ଜଗନ୍ନାଥଙ୍କର ଏହି ଆଦେଶ; ଯାହାକି ମାନିବାକୁ ପଡ଼ିବ ସମସ୍ତଙ୍କୁ ଅକ୍ଷରେ ଅକ୍ଷରେ ।”

ସର୍ବକନିଷ୍ଠ ପୁରୁଷୋତ୍ତମ ହେବେ ରାଜା ଆଉ ଏହି ଆଦେଶ ଅକ୍ଷରେ ଅକ୍ଷରେ ମାନିବେ ସବୁ ଜ୍ୟେଷ୍ଠ ଭାଇମାନେ । ଏହା କ’ଣ କେବେ ସମ୍ଭବ ! ଈର୍ଷା ଓ ପ୍ରତିହିଂସାର ବହ୍ନି ଜଳିଉଠିଲା ସବୁ ଭାଇମାନଙ୍କ ମନରେ ; କିନ୍ତୁ ପ୍ରକାଶ କଲେ ନାହିଁ କେହି । ପିତାଙ୍କ ଆଦେଶ ପାଳନ କରି ସଂଧ୍ୟା ଆଳତି ଦେଖିଲେ ସମସ୍ତେ ; କିନ୍ତୁ ପୁରୁଷୋତ୍ତମଙ୍କର ସବୁ ଭାଇମାନଙ୍କ ମଧ୍ୟରୁ ଜଣଙ୍କର ମନରେ ମଧ୍ୟ ନ ଥାଏ ହର୍ଷ । ଆଳତି ପରେ ସମସ୍ତେ ଫେରିଲେ ଉଆସକୁ । ତା’ପରେ ଭାଇମାନଙ୍କ ମଧ୍ୟରେ ଚାଲିଲା ଆଲୋଚନା, କେଉଁ

Digitized by srujanika@gmail.com

ଉପାୟରେ ପୁରୁଷୋତ୍ତମଦେବଙ୍କୁ ଜୀବନରେ ଶେଷ କରିଦେବ ସମସ୍ତଙ୍କର ଅଜ୍ଞାତସାରରେ ।

କିନ୍ତୁ ସ୍ୱୟଂ ପ୍ରଭୁ ଜଗନ୍ନାଥ ଯାହାର ସହାୟ ତାହାର ଅନିଷ୍ଟ କରିବ କିଏ ? ପୁରୁଷୋତ୍ତମଙ୍କୁ ମାରିବାପାଇଁ ବିଭିନ୍ନ ପ୍ରକାର କୌଶଳ ଅବଲମ୍ବନ କଲେ ତାଙ୍କ ଭାଇମାନେ ; କିନ୍ତୁ ସବୁ ବିପଦରୁ ରକ୍ଷା ପାଇଗଲେ ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କ ଦୟାରୁ । ତାଙ୍କୁ ଦିନେ ସ୍ୱପ୍ନରେ ଜଗନ୍ନାଥ ଜଣାଇଦେଲେ ଭାଇମାନଙ୍କର ଚକ୍ରାନ୍ତ କଥା । ସେହିଦିନଠାରୁ ପୁରୁଷୋତ୍ତମଙ୍କର ମନପ୍ରାଣ ଟାଣି ହୋଇଗଲା ଜଗନ୍ନାଥଙ୍କ ଆଡ଼କୁ । ସେ ସବୁବେଳେ ଚିନ୍ତାକଲେ ସେହି ପ୍ରଭୁଙ୍କ କଥା । ଯଥାମତ ପୂଜା ଉପାସନା କଲେ ତାଙ୍କୁ ଅତି ଭକ୍ତି ସହକାରେ ।

୧୪୬୩ ଖ୍ରୀଷ୍ଟାବ୍ଦରେ କପିଳେନ୍ଦ୍ରଦେବ ବାହାରିଲେ ଦକ୍ଷିଣାତ୍ୟ ଅଭିଯାନରେ । ତାଙ୍କ ସହିତ ଗଲେ ପୁରୁଷୋତ୍ତମଦେବ । ସେତେବେଳେ ସେ ଯୁବକ । ତାଙ୍କର ବାହୁରେ ପ୍ରଭୂତ ବଳ, ହୃଦୟରେ ଅସୀମ ସାହସ, ପ୍ରାଣରେ ଅଖଣ୍ଡ ଧୈର୍ଯ୍ୟ । ତାଙ୍କର ଅଦ୍ଭୁତ ରଣକୌଶଳ ଯୋଗୁ ଉତ୍କଳସେନା ଦଖଲ କରିବାକୁ ଲାଗିଲେ ଦାକ୍ଷିଣାତ୍ୟର ଗୋଟିଏ ପରେ ଗୋଟିଏ ରାଜ୍ୟ ।

୧୪୬୪ ଖ୍ରୀଷ୍ଟାବ୍ଦରେ ଶେଷହେଲା କପିଳେନ୍ଦ୍ରଦେବଙ୍କର ଦକ୍ଷିଣାତ୍ୟ ଅଭିଯାନ । ତା'ପରେ ସେ ସେନାବାହିନୀକୁ ଆଦେଶ ଦେଲେ ନିଜ ପ୍ରିୟ ରାଜଧାନୀକୁ ଫେରିଆସିବା ପାଇଁ । ସୈନ୍ୟମାନେ ସମସ୍ତେ ଅତିଶୟ କ୍ଳାନ୍ତ । ମହାରାଜା ଏବଂ ରାଜକୁମାର ମଧ୍ୟ ସେଥିରୁ ବାଦ୍ ଯାଇନାହାନ୍ତି ; ତେଣୁ କୃଷ୍ଣାନଦୀ ତୀରରେ କିଛିଦିନ ରୁହଣି

Digitized by srujanika@gmail.com

ପକାଇ ରଖିବା ପାଇଁ ସ୍ଥିର ହେଲା । ଈଶ୍ୱରଙ୍କ ଲୀଳା ଅତି ବିଚିତ୍ର-ମୟ । ସେହି ଲୀଳାର ଅନ୍ତ ପାଇବା କି'ଣ ସହଜ ? ସେହି ଶିବିରରେ ରାଜା ପଡ଼ିଲେ ଶକ୍ତ ବେମାର । ସେ ଜାଣିପାରିଲେ ଆଉ ବଞ୍ଚିରହିବା ଭାଗ୍ୟରେ ତାଙ୍କର ନାହିଁ ; ତେଣୁ ସେ ନିଜ ଯୋଗ୍ୟପୁତ୍ର ବୀରବର ପୁରୁଷୋତ୍ତମଦେବଙ୍କ ମସ୍ତକରେ ପିନ୍ଧାଇଦେଲେ ରାଜମୁକୁଟ ସ୍ୱ ହସ୍ତରେ । ତା' ପରେପରେ ଶେଷନିଶ୍ୱାସ ତ୍ୟାଗକଲେ କପିଳେନ୍ଦ୍ର ଦେବ । ସେଇଠି ଉତ୍କଳ ସାମ୍ରାଜ୍ୟର ଗଜପତିରୂପେ ଘୋଷିତ ହେଲେ ପୁରୁଷୋତ୍ତମଦେବ । ସେତେବେଳକୁ ୧୪୬୫ ଖ୍ରୀଷ୍ଟାବ୍ଦ ଚାଲିଥାଏ ।

ଅଭିଷେକ ଉତ୍ସବ ଶେଷ ହେବା ପରେ ପୁରୁଷୋତ୍ତମଦେବ ଯାତ୍ରା କଲେ ଉତ୍କଳର ରାଜଧାନୀ ଆଡ଼କୁ ମହାଆଡ଼ମ୍ବରରେ ବିଶାଳ ଉତ୍କଳ ସେନା ସହିତ । ସେତେବେଳେ କଟକ ଥିଲା ଉତ୍କଳର ରାଜଧାନୀ । ବାରବାଟୀ ଦୁର୍ଗରେ ଥିଲା ଗଜପତି ରାଜାଙ୍କ ନଅର । ସେଇଠି ବାସ କରୁଥିଲେ ଗଜପତି ରାଜାମାନେ ବଂଶାନୁକ୍ରମେ । ବାରବାଟୀ ଦୁର୍ଗ ଚାରିପଟେ ପରିଖା ଥିଲା । ଶତ୍ରୁମାନେ ସହଜରେ ପଶିପାରୁନଥିଲେ ଗଜପତି ରାଜାଙ୍କ ନଅର ଭିତରକୁ ।

ମହାଉଲ୍ଲାସରେ ପୁରୁଷୋତ୍ତମଦେବ କଟକରେ ପହଞ୍ଚିଲେ ସେହି ବିପୁଳ ଉତ୍କଳ ସେନାବାହିନୀ ସହିତ । ସେ ଭାବିଥିଲେ ଭାଇମାନେ ତାଙ୍କୁ ସାଦରେ ଗ୍ରହଣ କରିବେ ଏବଂ ମାନିନେବେ ଉତ୍କଳର ରାଜାରୂପେ । ସେତେବେଳଯାଏ ମହାରାଜା କପିଳେନ୍ଦ୍ର ଦେବଙ୍କ ମୃତ୍ୟୁ ସମ୍ବାଦ ଏବଂ ପୁରୁଷୋତ୍ତମଦେବ ଉତ୍କଳର ମହାରାଜା ରୂପେ ଘୋଷିତ ସମ୍ବାଦ ଜାଣି ନଥା'ନ୍ତି କେହି ରାଜଧାନୀ ଅଧିବାସୀ । ପୁରୁଷୋତ୍ତମଦେବ ରାଜଧାନୀରେ ପହଞ୍ଚିବା ପରେ ପରେ ରାଜବାଧି

Digitized by srujanika@gmail.com

ଅନୁଯାୟୀ ଘୋଷଣା କରାଗଲା କପିଳେନ୍ଦ୍ରଦେବଙ୍କ ମୃତ୍ୟୁ ସମ୍ବାଦ ଏବଂ ପୁରୁଷୋତ୍ତମଦେବ ମହାରାଜା ରୂପେ ଘୋଷିତ ହେବା ସମ୍ବାଦ । ପୁରୁଷୋତ୍ତମଦେବ ନିଜକୁ ଅପ୍ରତିଦ୍ୱନ୍ଦ୍ୱୀ ରାଜା ଭାବିନେଇ ଆଦେଶ ଦେଲେ ନିଜର ଅଭିଷେକ ଉତ୍ସବ ଆୟୋଜନ କରିବାପାଇଁ ।

ରାଇଜସାରା ଖେଳିଗଲା ଏହି ସୁସମ୍ବାଦ । ରାଜ୍ୟର ବହୁତଲୋକ ଅତି ଭଲ ପାଉଥିଲେ ପୁରୁଷୋତ୍ତମଦେବଙ୍କୁ । ଉତ୍କଳରେ ଏବଂ ଉତ୍କଳ ବାହାରେ ଯେତେ କରଦରାଜା ବା ସାମନ୍ତ ଥିଲେ ସମସ୍ତେ ଏହି ସମ୍ବାଦକୁ ଗୋଟିଏ ଅତିଶୟ ଶୁଭ ସମ୍ବାଦ ବୋଲି ମନେକଲେ । ଅଭିଷେକ ଦିନ ଭେଟି ଧରି ଜଣକ ବାରବାଟୀ ଦୁର୍ଗରେ ଉପସ୍ଥିତ ହେବେ ବୋଲି ସମସ୍ତେ ପ୍ରସ୍ତୁତ ହେଲେ । ଏଣେ ରାଇଜରେ ଯେତେ ଶିଳ୍ପୀ ଥିଲେ ସମସ୍ତେ ଲାଗିପଡ଼ିଲେ ରାଜଧାନୀକୁ ନାନା ସାଜସଜ୍ଜାରେ ବିଭୂଷିତ କରିବାପାଇଁ । ଚାରିଆଡ଼େ ଲାଗିଲା ଧୂମଧାମ । ସମସ୍ତଙ୍କ ମନରେ ମହାଆନନ୍ଦ ।

ଆଉ ପୁରୁଷୋତ୍ତମଦେବଙ୍କ ଭାଇମାନେ ? ସେମାନେ ଜଳିବାକୁ ଲାଗିଲେ ହିଂସାରେ । ରାଜଧାନୀରେ ଅଭିଷେକ ଉତ୍ସବପାଇଁ ସାଜ-ସଜ୍ଜା ଚାଲିଥିବାବେଳେ ସେମାନଙ୍କ ମଧ୍ୟରେ ଚାଲିଥିଲା ଷଡ଼ଯନ୍ତ୍ର । କେମିତି ପୁରୁଷୋତ୍ତମଦେବଙ୍କୁ ସମ୍ରାଟ କରାଇ ନଦେଇ ହତ୍ୟାକରି ଦେବେ । ଏହି ଷଡ଼ଯନ୍ତ୍ରକାରୀ ଦଳର ନେତୃତ୍ୱ ନେଇଥିଲେ କପିଳେନ୍ଦ୍ରଦେବଙ୍କ ଜ୍ୟେଷ୍ଠପୁତ୍ର ହମୀର । କାରଣ ପ୍ରଚଳିତ ପ୍ରଥା ଅନୁଯାୟୀ କପିଳେନ୍ଦ୍ରଦେବଙ୍କ ପରେ ସେହି କେବଳ ଉତ୍କଳ ସିଂହାସନର ପ୍ରକୃତ ଉତ୍ତରାଧିକାରୀ । ସେମାନଙ୍କ ସହିତ ଯୋଗ ଦେଲେ କେତେକ ଦୁର୍ବୃତ୍ତ ପ୍ରଜା ଧନ ଲୋଭରେ ।

Digitized by srujanika@gmail.com

ପୁରୁଷୋତ୍ତମଦେବ ଜାଣିପାରିଲେ ଏହି ଷଡ଼ଯନ୍ତ୍ର ବିଷୟ । ସେ ଭାବିଲେ ଶ୍ରୀକ୍ଷେତ୍ରପତି ମହାପ୍ରଭୁ ଜଗନ୍ନାଥହିଁ ଏହି ବିପଦ କାଳରେ ତାଙ୍କର ଏକମାତ୍ର ଭରସା । ଆଉ କାଳବିଳମ୍ବ ନକରି ସେ ଅଧିଆ ପଡ଼ିଲେ ଜଗନ୍ନାଥଙ୍କ ପାଖରେ । ତାଙ୍କୁ ସ୍ୱପ୍ନ ହେଲା, ସ୍ୱୟଂ ମହାପ୍ରଭୁ ଜଗନ୍ନାଥ ତାଙ୍କୁ ଆଶୀର୍ବାଦ କରୁଛନ୍ତି ଏବଂ କହୁଛନ୍ତି "ରାଜ୍ୟର ସମସ୍ତ ସୈନ୍ୟ ଆସନ୍ତା କାଲି ତାଙ୍କୁ ଭେଟି ଶିବିର ବାନ୍ଧି ରହିବେ ରାଜଧାନୀରେ ଅଭିଷେକ ଉତ୍ସବ ଶେଷ ହେବା ପର୍ଯ୍ୟନ୍ତ । ଆଉ ଯଦି କେହି ବିଦ୍ରୋହ କରନ୍ତି ତାହାହେଲେ ବିଦ୍ରୋହୀମାନଙ୍କୁ ସଙ୍ଗେ ସଙ୍ଗେ ଶାସ୍ତି ଦେଇ ଜବତ୍ କରିବେ ସୈନ୍ୟମାନେ ।"

ପୁରୁଷୋତ୍ତମଦେବ ଫେରିଆସିଲେ ନଅରକୁ । ରାତି ନ ପାହୁଣୁ ଶୁଣିବାକୁ ପାଇଲେ କୋଳାହଳ । ନଅର ବାହାରେ ସେ ତାଙ୍କ ଶୟନ କୋଠରୀ ବାହାରକୁ ଆସିବା ସଙ୍ଗେ ସଙ୍ଗେ ଖବର ପାଇଲେ ହଜାର ହଜାର ସୈନ୍ୟ ଆସି ଜମାହୋଇଛନ୍ତି ରାଜ-ନଅର ବାହାରେ । ସେମାନଙ୍କୁ ଭେଟିବାପାଇଁ ବାହାରିଲେ ପୁରୁଷୋତ୍ତମଦେବ । ଜଗନ୍ନାଥ ତାଙ୍କୁ ସ୍ୱପ୍ନରେ କହିଥିବା କଥା ଜାଣିନଥିଲେ କେହି ; ତେଣୁ କାଳେ ବିପଦ ଘଟିବ ଭାବି ତାଙ୍କ ହିତାକାଂକ୍ଷୀମାନେ ତାଙ୍କୁ ବାହାରକୁ ଯିବାପାଇଁ ମନାକଲେ । କିନ୍ତୁ କାହାକଥା ନଶୁଣି ବାହାରକୁ ଚାଲିଆସିଲେ ପୁରୁଷୋତ୍ତମଦେବ । ତାଙ୍କୁ ଦେଖିବାକ୍ଷଣି ଆନନ୍ଦଧ୍ୱନି କରିବାକୁ ଲାଗିଲେ ସୈନ୍ୟମାନେ । କହିଲେ, ଜୀବନର ଶେଷ ରକ୍ତବିନ୍ଦୁ ପର୍ଯ୍ୟନ୍ତ ଢାଳି ସେମାନେ ସାହାଯ୍ୟ କରିବେ ତାଙ୍କୁ । ପୁରୁଷୋତ୍ତମଙ୍କ ପ୍ରତି ସୈନ୍ୟମାନଙ୍କ ଏତାଦୃଶ ଭାବ ଦେଖି ତାଙ୍କ ଭାଇମାନେ ନୀରବତା ଅବଲମ୍ବନ କରିବାକୁ ବାଧ୍ୟ ହେଲେ ।

Digitized by srujanika@gmail.com

ଅଭିଷେକ କାଳ ଉପସ୍ଥିତ ହେଲା । ଯଥାସମୟରେ ମହା-ସମାରୋହରେ ଶେଷ ହେଲା ଅଭିଷେକ ଉତ୍ସବ । ତାଙ୍କର ଭାଇମାନେ ମଧ୍ୟ ଯୋଗଦେଲେ ଏହି ଉତ୍ସବରେ । ସେମାନଙ୍କ ଢଙ୍ଗଢାଙ୍ଗ ଦେଖି ଯେ କୌଣସି ଲୋକ ଭାବିନେବ ଯେ, ସେମାନେ ସମସ୍ତେ ପୁରୁଷୋତ୍ତମଦେବଙ୍କ ପ୍ରତି ଥିବା ବିଦ୍ୱେଷ ମନୋଭାବ ତ୍ୟାଗ କରି-ପାରିଛନ୍ତି । ପୁରୁଷୋତ୍ତମଙ୍କୁ ସମ୍ରାଟ ରୂପେ ପାଇ ବାରବାଟୀ ଦୁର୍ଗର ରାଜସିଂହାସନ ନାଚି ଉଠିଲା ଗୌରବ ଟେକରେ ।

ଅଭିଷେକ ଉତ୍ସବ ଦିନ କୌଣସିପ୍ରକାର ବାଧାବିଘ୍ନର ସମ୍ମୁଖୀନ ନ ହେବା ଯୋଗୁ ପୁରୁଷୋତ୍ତମଦେବ ଭାବିନେଲେ ଯେ, ତାଙ୍କ ଭାଇମାନେ ସମସ୍ତେ ତାଙ୍କୁ ସମର୍ଥନ କରୁଛନ୍ତି । ତାଙ୍କ ବିରୁଦ୍ଧରେ ସେମାନଙ୍କ ମଧ୍ୟରୁ କେହି କେବେ ଉଠିବେ ନାହିଁ ; କିନ୍ତୁ ତାଙ୍କ ଭାବନା ଭୁଲ ହେଲା । ସେ ସିଂହାସନ ଆରୋହଣ କରିବାର ମାତ୍ର କେଇଟା ଦିନ ଅତିବାହିତ ନ ହେଉଣୁ ସେମାନେ ନାନା ପ୍ରଲୋଭନ ଦେଖାଇ ଗୋପନରେ ସଂଗ୍ରହ କଲେ କିଛିସଂଖ୍ୟକ ସୈନ୍ୟ । ସେମାନଙ୍କ ସାହାଯ୍ୟରେ ଉତ୍କଳ ଅଧୀନସ୍ଥ ରାଇଜଗୁଡ଼ିକୁ ଗୋଟିଏ ପରେ ଗୋଟିଏ ଦଖଲ କରିନେଇ ଶେଷରେ ଗାଦି-ଚ୍ୟୁତ କରିବେ ପୁରୁଷୋତ୍ତମଦେବଙ୍କୁ ।

ପୁରୁଷୋତ୍ତମଦେବ ପିଲାଟି ଦିନରୁ ଥିଲେ ଜଗନ୍ନାଥଙ୍କର ପରମ ଭକ୍ତ । ସେ ସବୁବେଳେ ଚାହୁଁଥିଲେ ଶାନ୍ତି । ଯୁଦ୍ଧ, ରକ୍ତପାତର ଘୋର ବିରୋଧୀ ଥିଲେ ସେ ; ତେଣୁ ସିଂହାସନ ଲାଭକରିବାପରେ ସ୍ଥିର କରିଥିଲେ ଶାନ୍ତି ମୈତ୍ରୀର ପତାକା ତଳେ ରାଜ୍ୟ ଶାସନ ଚଳାଇ ବୃଦ୍ଧି କରିଯିବ ଉତ୍କଳର ଗୌରବ; କିନ୍ତୁ ମଣିଷ ଯାହାଭାବେ ତାହା କଅଣ ସବୁବେଳେ ସମ୍ଭବ ହୁଏ ? ଦିନେ ସେ ରାଜଦର-ବାରରେ ପାତ୍ର ମନ୍ତ୍ରୀ ଗହଣରେ ବସି ରାଜ୍ୟ କେମିତି ଶାନ୍ତିରେ ଶାସିତ

Digitized by srujanika@gmail.com

ହେବ, ପ୍ରଜାମାନେ କେମିତି ସୁଖରେ କାଳ କାଟିବେ, ଉତ୍କଳର ଗୌରବ କେମିତି ବୃଦ୍ଧି ପାଇବ ଇତ୍ୟାଦି ବିଷୟରେ ଆଲୋଚନା କରୁଥିବାବେଳେ ତାଙ୍କ ଖାସ୍ ଦୂତ ଆସି ସମ୍ବାଦ ଦେଲା "ମହାରାଜ, ସର୍ବନାଶ ! ସୁବର୍ଣ୍ଣଦେବ ଆକ୍ରମଣ କରି ଅଧିକାର କରିସାରିଲେଣି ବାମଣ୍ଡା ରାଜ୍ୟ ଆଉ ହରିହରଦେବ ସୋନପୁରରେ ଆରମ୍ଭ କରି-ଦେଇଛନ୍ତି ବିଦ୍ରୋହ । ଏହା ଶୁଣି ସ୍ତମ୍ଭୀଭୂତ ହୋଇଗଲେ ଦର-ବାରରେ ବସିଥିବା ସମସ୍ତେ । ସେଇଠି ନିଷ୍ପତ୍ତି କରାଗଲା ଶୀଘ୍ର ସୈନ୍ୟ ସଜ୍ଜିତ କରି ଅଭିଯାନ କରାଯିବ ବାମଣ୍ଡା ଓ ସୋନପୁର ଅଭିମୁଖରେ ।

ସୈନ୍ୟବାହିନୀ ନେଇ ନିଜେ ପୁରୁଷୋତ୍ତମଦେବ ପ୍ରଥମେ ଗଲେ ବାମଣ୍ଡା ଅଭିମୁଖରେ । ସେଇଠି ତାଙ୍କୁ ପରିଶ୍ରମ କରିବା ପାଇଁ ପଡ଼ିଲାନି ବେଶୀ । ଅତି ଅଳ୍ପ ସମୟ ମଧ୍ୟରେ ନିଜ ହାତକୁ ନେଇଆସିଲେ ବାମଣ୍ଡା । ସୁବର୍ଣ୍ଣଦେବ ଲୁଚିକରି ଚାଲିଗଲେ ସେହି ରାଇଜରୁ । ତା'ପରେ ପୁରୁଷୋତ୍ତମଦେବ ଗଲେ ସୋନପୁର । ସେଇଠି ବିଦ୍ରୋହ ଦମନ କରି ଫେରିଆସିଲେ ନିଜ ନଅରକୁ ।

ବାରବାଟୀରେ ପହଞ୍ଚିବା ପରେ ତାଙ୍କ ମନ୍ତ୍ରୀ, ସେନାପତି ତାଙ୍କୁ ପ୍ରବର୍ତ୍ତାଇଲେ ଭାଇମାନଙ୍କୁ ଉପଯୁକ୍ତ ଦଣ୍ଡ ଦେବାପାଇଁ । କିନ୍ତୁ ଶାନ୍ତିପ୍ରିୟ ପୁରୁଷୋତ୍ତମଦେବ ଚାହିଁଲେ ତାଙ୍କୁ କ୍ଷମା ଦେବାପାଇଁ । ଏତିକିବେଳେ ଦୂତ ଆସି ଖବରଦେଲା ଯେ, ନରସିଂହଦେବ, ରାମଚନ୍ଦ୍ରଦେବ, ବ୍ରଜକିଶୋରଦେବ, ଗୋବିନ୍ଦ-ଦେବ, ପଦ୍ମନାଭଦେବ ଆଦି ରାଜପୁତ୍ରମାନଙ୍କ ସହାୟତାରେ ବିକ୍ରମଦେବ ଆକ୍ରମଣ କରିଛନ୍ତି ଦାକ୍ଷିଣାତ୍ୟରାଜ୍ୟ । ସଙ୍ଗରେ ତାଙ୍କର ଅଛନ୍ତି ଅନେକ ସୈନିକ । ସମସ୍ତେ ଯୁବକ ।

Digitized by srujanika@gmail.com

ଏହି ସମ୍ବାଦ ଶୁଣି ପୁରୁଷୋତ୍ତମଦେବ ଜାଣିପାରିଲେ ଏଥର ସବୁ ଭାଇଯାକ ମିଳି ସୃଷ୍ଟି କରିଛନ୍ତି ଏକ ପ୍ରବଳ ବିଦ୍ରୋହ । ତେଣୁ ସେ ସାଙ୍ଗେ ସାଙ୍ଗେ ଆରମ୍ଭ କରିଦେଲେ ଦାକ୍ଷିଣାତ୍ୟ ଅଭିଯାନ । ଅଭିଯାନ ଆରମ୍ଭ କରିବା ପୂର୍ବରୁ ଜଗନ୍ନାଥ ମହାପ୍ରଭୁଙ୍କୁ ପ୍ରାର୍ଥନା କଲେ ରାଜ୍ୟରୁ ଅଶାନ୍ତି ଓ ବିଦ୍ରୋହର ନିଆଁ ଲିଭାଇ ଦେବା-ପାଇଁ । ଦାକ୍ଷିଣାତ୍ୟ ଅଭିଯାନ ଥିଲା ଗୋଟିଏ ଅତିବଡ଼ ଧରଣର । ତାଙ୍କ ସହିତ ଯାଇଥିଲେ ରାଜ୍ୟର ଅସଂଖ୍ୟ ଘୋର, ରଥୀ, ପଦାତିକ ସୈନ୍ୟ । ଗଜପତିଙ୍କ ସମ୍ମାନ ରକ୍ଷାପାଇଁ ତାଙ୍କ ସହିତ ଯୋଗଦେଇ ଥିଲେ ବାମଣ୍ଡା, ତାମ୍ରଲିପ୍ତି, କାସିପୁର ପ୍ରଭୃତି ପ୍ରଦେଶର ରଣରଙ୍ଗ ପାଇକ ସୈନ୍ୟମାନେ । ସେନାପତି ବସନ୍ତ ହରିଚନ୍ଦନ ଓ ବୃଦ୍ଧ ଅର୍ଜୁନ ସିଂହ ପରିଚାଳନା କରୁଥିଲେ ସୈନ୍ୟବାହିନୀ ।

ସେହି କୃଷ୍ଣାନଦୀ ତୀର—ଯେଉଁଠାରେ କି ପୂର୍ବେ ବୃଦ୍ଧ ସମ୍ରାଟ କପିଳେନ୍ଦ୍ରଦେବଙ୍କ ସେନାବାହିନୀ ଶିବିର ସ୍ଥାପନ କରିଥିଲେ । ଦାକ୍ଷିଣାତ୍ୟ ଜୟ କରିସାରି, ସେହି କୃଷ୍ଣାନଦୀ ତୀର—ଯେଉଁଠାରେ କି ପୁରୁଷୋତ୍ତମଦେବ ଉତ୍କଳର ରାଜା ହେବେବୋଲି କପିଳେନ୍ଦ୍ରଦେବ ଘୋଷଣା କରିଥିଲେ । ସେହି ପବିତ୍ର ସ୍ଥାନରେ ପୁରୁଷୋତ୍ତମଦେବଙ୍କ ସୈନ୍ୟମାନେ ଶିବିର ସ୍ଥାପନ କରି ପ୍ରସ୍ତୁତ ହେଲେ ବିଦ୍ରୋହୀବୀର ହମ୍ବୀରଦେବଙ୍କ ସହିତ ମୁକାବିଲା କରିବାପାଇଁ । ପୁରୁଷୋତ୍ତମଦେବଙ୍କୁ ସେହି ସ୍ଥାନରୁ ହଟାଇଦେବା ଉଦ୍ଦେଶ୍ୟରେ ନିଜର ସୈନ୍ୟବାହିନୀ ନେଇ ପହଞ୍ଚିଲେ ହମ୍ବୀରଦେବ । ଉଭୟଙ୍କ ମଧ୍ୟରେ ହେଲା ତୁମୁଳ ସଂଗ୍ରାମ । ଯୁଦ୍ଧ ଚାଲିଲା ଅନେକଦିନ । ଯୁଦ୍ଧରେ ହତାହତ ହେଲେ ଉଭୟ ପକ୍ଷର ଅସଂଖ୍ୟ ସୈନିକ ।

Digitized by srujanika@gmail.com

ହଠାତ୍ ରଣ ଭୂମିରେ ଖଣ୍ଡା ଖେଳାଇ ଶତ୍ରୁସୈନ୍ୟ ନିପାତ କରିବାରେ ବ୍ୟସ୍ତଥାଆନ୍ତି ପୁରୁଷୋତ୍ତମଦେବ, ଏତିକି-ବେଳେ ଦାରୁଣ ଆଘାତ ପାଇଲେ । ସଙ୍ଗେ ସଙ୍ଗେ ମୂର୍ଚ୍ଛିତ ହୋଇ ପଡ଼ିଗଲେ ସେ । କିଛି ସମୟପରେ ଚେତା ଫେରିଆସିଲା ତାଙ୍କର । ଦେଖିଲେ ଜଣେ ଅପରିଚିତା ସୁନ୍ଦରୀ ନାରୀ ତାଙ୍କ ମୁହଁରେ ପାଣି ଦେଉଛନ୍ତି । ସେତେବେଳେ ତାଙ୍କର କଣ୍ଠ ଶୁଖିଯାଉଥାଏ ଶୋଷରେ । ସେହି ସୁନ୍ଦରୀ ଯୁବତୀଙ୍କର ହାତର ପାଣିମନ୍ଦିକ ତାଙ୍କୁ ବୋଧହେଲା ସତେ ଯେପରି ଅମୃତପରି । ସେ ନୀରବରେ ଚାହିଁରହିଲେ ସେହି ଯୁବତୀଙ୍କ ଆଡ଼କୁ । ତାଙ୍କୁ କିଛି ସମୟ ଚାହିଁବାପରେ ସହାସ୍ୟ ବଦନରେ ଯୁବତୀ କହିଲେ, "ବୀରବର, ଉଠ, ତୁମେ ଯେ ବର୍ତ୍ତମାନ ସମ୍ପୂର୍ଣ୍ଣ ସୁସ୍ଥ । ଯାଅ, ଯୁଦ୍ଧରେ ଲାଗି ସମ୍ପାଦନ କର ତୁମର କର୍ତ୍ତବ୍ୟ ।

ଯୁବତୀଙ୍କର ସେବା ଓ ଉତ୍ସାହବାଣୀ ପୁରୁଷୋତ୍ତମଙ୍କ ମନରେ ଦେଇଥିଲା ଅସୀମ ବଳ । ସେ ପୁଣି ଡେଇଁପଡ଼ିଲେ ଯୁଦ୍ଧକୁ । ବହୁ ଦିନପରେ ଯୁଦ୍ଧ ଶେଷ ହେଲା । ହମ୍ବୀରଦେବ ପରାଜିତ ହେଲେ । ତାଙ୍କର ସବୁ ବଳ, ସବୁ ସାହସ ଚୂନାହେଲା । ତାଙ୍କୁ ଏବଂ ତାଙ୍କୁ ସାହାଯ୍ୟ କରୁଥିବା ଭାଇମାନଙ୍କୁ ବନ୍ଦୀକରି ନେଇଗଲେ ପୁରୁଷୋତ୍ତମଙ୍କ ସୈନ୍ୟମାନେ । ସେମାନଙ୍କୁ ନେଇ ଭର୍ତ୍ତିକରିଦେଲେ କଟକର ବାର-ବାଟୀ ଦୁର୍ଗ କାରାଗାରରେ । ପୁରୁଷୋତ୍ତମଦେବ ଫେରିଲେ ନିଜ ନଅରକୁ ଦାକ୍ଷିଣାତ୍ୟରେ ଶାନ୍ତି ସ୍ଥାପନ କରିସାରି ।

ବିଦ୍ରୋହୀ ଭାଇମାନଙ୍କୁ କଠିନ ଦଣ୍ଡ ଦେବାପାଇଁ ଚାରିଆଡ଼ୁ ପ୍ରସ୍ତାବ ଦିଆଗଲା ପୁରୁଷୋତ୍ତମଦେବଙ୍କୁ । ସେ କହିଲେ, ନିଶ୍ଚୟ ଉପଯୁକ୍ତ ଦଣ୍ଡ ଦିଆଯିବ । ସମସ୍ତେ ଅତି ଉତ୍କଣ୍ଠିତ ଭାବରେ ଚାହିଁ

Digitized by srujanika@gmail.com

ରହିଲେ ସେହି ଉପଯୁକ୍ତ ଦଣ୍ଡ ଦେଖିବାପାଇଁ । ଦଣ୍ଡ ଦେବାପାଇଁ ଦିନ ସ୍ଥିର ହେଲା । ସମସ୍ତେ ଭାବିଲେ ପୁରୁଷୋତ୍ତମ ନିଶ୍ଚୟ କଠିନ ଦଣ୍ଡ ଦେବେ । ଏହିଭଳି ଦୁର୍ବୃତ୍ତମାନଙ୍କୁ ସେ ନିଶ୍ଚୟ ଉପଯୁକ୍ତ ଶାସ୍ତି ଦେଇ ସମଗ୍ର ରାଜ୍ୟରୁ ଦୂର କରିଦେବେ ଅଶାନ୍ତି ।

ଦଣ୍ଡ ଦେବାଦିନ ! ସମସ୍ତଙ୍କ ମନରେ ଉତ୍କଣ୍ଠା । ପୁରୁଷୋତ୍ତମଦେବ ଯଥାସମୟରେ ଶେଷ କରିଦେଲେ ଦରବାର କାର୍ଯ୍ୟ । ତା'ପରେ ଗଲେ କାରାଗାର ଆଡ଼କୁ । ତାଙ୍କ ସହିତ ଗଲେ ଦରବାରରେ ଉପସ୍ଥିତ ଥିବା ଅନ୍ୟ ସମସ୍ତେ । ବନ୍ଦୀଗୃହର ଦ୍ୱାରକୁ ଫିଟାଇଦେଲ ନିଜ ହସ୍ତରେ । ତା'ପରେ ଭାଇମାନଙ୍କୁ କହିଲେ, ବର୍ତ୍ତମାନଠାରୁ ତୁମେ ସମସ୍ତେ ମୁକ୍ତ । ନଅରକୁ ଯାଇ ଆନନ୍ଦରେ କାଳକଟାଅ । କି ଆଶ୍ଚର୍ଯ୍ୟ ! ଏହି ମୁକ୍ତିହିଁ ହେଲା ବିଦ୍ରୋହୀମାନଙ୍କର ବିଦ୍ରୋହର ଉପଯୁକ୍ତ ଶାସ୍ତି ଆଉ ଅପରାଧର ସମୁଚିତ ଦଣ୍ଡ । ଧନ୍ୟ ପୁରୁଷୋତ୍ତମଦେବ ! ଧନ୍ୟ ତୁମେ ! ସିଂହାସନ ଲାଭପାଇଁ ଜଗତରେ କେତେ ବିଦ୍ରୋହ ନ ହୋଇଛି । ବିଦ୍ରୋହୀମାନେ କଠିନ ଦଣ୍ଡ ନ ପାଇଛନ୍ତି ; କିନ୍ତୁ ବିଦ୍ରୋହୀମାନଙ୍କ ପ୍ରତି ତୁମର ଏହି ଉଦାରତା ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ଇତିହାସ ପୃଷ୍ଠାରେ ଚିରଦିନ ପାଇଁ ।

ବିଦ୍ରୋହୀ ଭାଇମାନଙ୍କ ପ୍ରତି ପୁରୁଷୋତ୍ତମଦେବଙ୍କ ଏହିଭଳି ବ୍ୟବହାର ସେମାନଙ୍କ ମନରେ ଆଣିଦେଇଥିଲା ଅପୂର୍ବ ପରିବର୍ତ୍ତନ । ନିଜନିଜର ଅପକର୍ମପାଇଁ ଅନୁତପ୍ତ ହେଲେ ସମସ୍ତେ । ଆଉ ସମସ୍ତେ ଶପଥନେଲେ ପୁରୁଷୋତ୍ତମଦେବଙ୍କର ଅନୁରୋଧ ସ୍ୱୀକାର କରିବା ପାଇଁ ଏବଂ ତାଙ୍କୁ ମନ ପ୍ରାଣଦେଇ ସାହାଯ୍ୟ କରିବାପାଇଁ । ଫଳରେ ଉତ୍କଳ ସିଂହାସନ ହସିଉଠିଲା ନବତେଜରେ; ପୁଣି ନବବଳ,

Digitized by srujanika@gmail.com

ନବତେଜ ପାଇ । ପୁରୁଷୋତ୍ତମଦେବ ଭାଇମାନଙ୍କୁ ରାଜୋଚିତ ସମ୍ମାନ ପ୍ରଦର୍ଶନ କଲେ ; ପ୍ରତ୍ୟେକଙ୍କୁ ଗୋଟିଏ ଲେଖାଏଁ ରାଜ୍ୟର ସାମନ୍ତ ରାଜା କରାଇ । ଏହି ସାମନ୍ତ ରାଜାମାନଙ୍କୁ କରାଗଲା ସ୍ୱାଧୀନ । ଏମାନେ ଯେ ଯାହାର ରାଜ୍ୟରେ ଅଖଣ୍ଡ କ୍ଷମତା ଭୋଗକଲେ । ବଡ଼ଭାଇ ହମୀରଙ୍କୁ ଦିଆଯାଇଥିଲା ପାରଳାଖେମୁଣ୍ଡି ଏବଂ ସବାସାନ ଭାଇ ସୁଭକ୍ତଙ୍କୁ ଦିଆଯାଇଥିଲା ବାମଣ୍ଡା ରାଜ୍ୟ । ଭାଇମାନେ ସମସ୍ତେ ନିଜ ନିଜ ରାଜ୍ୟରେ ଗଜପତି ସିଂହାସନର ମହତ୍ତ୍ୱ ବଢ଼ାଇବାକୁ ଲାଗିଲେ; ଫଳରେ ଗଜପତି ବଂଶର ମର୍ଯ୍ୟାଦା ବୃଦ୍ଧି ପାଇବାକୁ ଲାଗିଲା ଦିନକୁ ଦିନ । ରାଜାମାନଙ୍କର ରାଜ୍ୟ ଗଲାଣି ; କିନ୍ତୁ ଲୋକେ ଆଜି ସୁଦ୍ଧା ଗାନ କରୁଛନ୍ତି ଗଜପତି ରାଜାମାନଙ୍କର ଯଶ କୀର୍ତ୍ତି । ଯୁଦ୍ଧାହତ ପୁରୁଷୋତ୍ତମଦେବଙ୍କୁ କୃଷ୍ଣା ନଦୀ ତୀରରେ ଯେଉଁ ଯୁବତୀ ସେବା ଶୁଶ୍ରୂଷା କରିଥିଲେ ସେ ହେଉଛନ୍ତି କାଞ୍ଚି ରାଜକନ୍ୟା ପଦ୍ମାବତୀ । ଦାକ୍ଷିଣାତ୍ୟରେ ସେତେବେଳେ କାଞ୍ଚି ବୋଲି ଗୋଟିଏ ରାଜ୍ୟ ଥିଲା । ସେହି ରାଜ୍ୟ ଲାଭକରିଥିଲା ଧନ ଗୌରବର ଶ୍ରେଷ୍ଠସ୍ଥାନ । ରାଜ୍ୟର ପ୍ରଜାମାନେ କାଳ କାଟୁଥିଲେ ଅତି ସୁଖରେ । ରାଜାଙ୍କ ପ୍ରତି ଅତୁଟ ଭକ୍ତି ଥିଲା ସେମାନଙ୍କର ।

ରାଜ୍ୟର ଶାନ୍ତି ଫେରିଆଇ ଆସିବା ପରେ ମନେପଡ଼ିଗଲା ପୁରୁଷୋତ୍ତମ-ଦେବଙ୍କର ସେହି ସୁନ୍ଦରୀ ଯୁବତୀ କଥା, ଯେଉଁ ଯୁବତୀ କି ତାଙ୍କୁ ଆହତ ଅବସ୍ଥାରେ ସେବା କରିଥିଲେ କୃଷ୍ଣା ନଦୀ କୂଳରେ । ବହୁତ ଅନୁସନ୍ଧାନ କରି ଜାଣିପାରିଲେ, ସେ ହେଉଛନ୍ତି କାଞ୍ଚି ରାଜଜେମା ପଦ୍ମାବତୀ । ଆହୁରି ଅନୁସନ୍ଧାନ କରି ଜାଣିପାରିଲେ ସେ କେବଳ ରୂପବତୀ ନଥିଲେ, ଥିଲେ ମଧ୍ୟ ଗୁଣବତୀ । ଗ୍ରେଟଠାରୁ ବଡ଼ଯାଏଁ ସବୁ ଶ୍ରେଣୀର ବିପନ୍ନ ଲୋକଙ୍କୁ ଉଦ୍ଧାର କରିବା, ସେବକ, ଶୋଷିଙ୍କ

Digitized by srujanika@gmail.com

ମୁଖରେ ଅନ୍ନ ଜଳ ଦେବା, ଦୀନ ଦୁଃଖୀଙ୍କୁ ସାହାଯ୍ୟ କରିବା ଥିଲା ପଦ୍ମାବତୀଙ୍କର ପ୍ରଧାନ ଗୁଣ । ଇଚ୍ଛା କଲେ ତାଙ୍କୁ ବିବାହ କରିବାପାଇଁ । ବିବାହ ପ୍ରସ୍ତାବ ନେଇ ଓଡ଼ିଶା ଦୂତ ଗଲେ କାଞ୍ଚି ଅଭିମୁଖରେ ।

କାଞ୍ଚିରାଜା ଶୁଣିଥିଲେ ପୁରୁଷୋତ୍ତମଦେବଙ୍କ ବିକ୍ରମ ଓ ସଦ୍‌ଗୁଣ ସମ୍ବନ୍ଧରେ ଖୁବ୍ ବେଶୀଭାବରେ । ଇଚ୍ଛା କରିଥିଲେ ନିଜ-କନ୍ୟା ପଦ୍ମାବତୀଙ୍କୁ ତାଙ୍କୁ ପ୍ରଦାନ କରିବାପାଇଁ ବିବାହ ସୂତ୍ରରେ; କିନ୍ତୁ ରଥଯାତ୍ରା ବେଳେ ପୁରୁଷୋତ୍ତମଦେବ ଛେରାପହଁରା କରିବା ଦେଖି ତାଙ୍କ କାର୍ଯ୍ୟକୁ ଗୋଟିଏ ଚଣ୍ଡାଳର କାର୍ଯ୍ୟ ବୋଲି ଭାବି ପରିବର୍ତ୍ତନ କରିଦେଇଥିଲେ ନିଜର ମନ । ଆଉ ତାଙ୍କ ସହିତ ପଦ୍ମାବତୀଙ୍କର ବିବାହ କରାଇ ଦେବେନି ବୋଲି ଶପଥ ନେଇ ଖୋଜି ବୁଲୁଥିଲେ ପଦ୍ମାବତୀଙ୍କ ପାଇଁ ଉପଯୁକ୍ତ ବର । ପିତାଙ୍କର ଏହି ଦାରୁଣ ଶପଥ ଶୁଣି ବିଚଳିତ ହୋଇପଡ଼ିଲେ ରୂପସୀ ପଦ୍ମାବତୀ । ପୁରୁଷୋତ୍ତମଦେବଙ୍କୁ ଦେଖିବାପରେ ତାଙ୍କର ବୀର ପରିଚୟ ପାଇବାଠାରୁ ସେ ମନେମନେ ଶପଥ କରିଥିଲେ ପୁରୁଷୋତ୍ତମ ଦେବଙ୍କୁ ବିବାହ କରିବାପାଇଁ । ସେ ମନେମନେ ସ୍ଥିରକଲେ ତାଙ୍କ ପିତା ଯଦି ଶପଥ ନ ବଦଳାଇ ପୁରୁଷୋତ୍ତମଦେବଙ୍କ ସହିତ ତାଙ୍କର ବିବାହକାର୍ଯ୍ୟ ସମ୍ପାଦନ ନ କରନ୍ତି ତା'ହେଲେ ସେ ବିଷପାନକରି ଶେଷ କରିଦେବେ ନିଜ ଜୀବନକୁ ।

ପୁରୁଷୋତ୍ତମଦେବଙ୍କ ବିବାହ ବାର୍ତ୍ତାନେଇ ଦୂତ ପହଞ୍ଚିଲେ ଯଥାସମୟରେ କାଞ୍ଚିରାଜାଙ୍କ ଦରବାରରେ । ଦୂତ ମୁହଁରୁ ବିବାହ ପ୍ରସ୍ତାବ ଶୁଣିବାକ୍ଷଣି ଚଟ୍‌କିନା ରାଗିଗଲେ କାଞ୍ଚିରାଜା । ରାଗିଯାଇ କହିଲେ, ତୁମ ରାଜା ଚଣ୍ଡାଳ କାମ କରୁଛି । ମୋ ଝିଅ ଚଣ୍ଡାଳଟାକୁ

Digitized by srujanika@gmail.com

ହୋଇପାରିବ ? କହିଦିଅ ଦୂତ ତୁମ ଚଣ୍ଡାଳ ରାଜାକୁ । ମୋ ଝିଅ ସହିତ ବିବାହ ହୋଇପାରିବନି ତାହାର ।”

ନିଜ ପ୍ରଭୁଙ୍କ ପ୍ରତି ମନ୍ଦ ବ୍ୟବହାର ସହିପାରିଲାନି ଦୂତ । କ୍ରୋଧରେ କାଞ୍ଚିଦରବାର ଛାଡ଼ିଲା ସେ । ଛାଡ଼ିବା ପୂର୍ବରୁ କାଞ୍ଚିରାଜାଙ୍କୁ ଶୁଣାଇ କହିଲା, ମନେରଖ ରାଜା, ତୁମେ ତୁମର ଗର୍ବର ପୁରସ୍କାର ପାଇଯିବ ଅବିଳମ୍ବେ ।

ଠିକ୍ ସମୟରେ ବାର୍ତ୍ତାବହ ଫେରିଲା ବାରବାଟୀ ଦୁର୍ଗକୁ । ଫେରିସାରି ସବୁକଥା ଜଣାଇଦେଲା ପୁରୁଷୋତ୍ତମଦେବଙ୍କୁ ଠିକଣଠି ଭାବରେ । ଶୁଣି କ୍ରୋଧରେ କମ୍ପିବାକୁ ଲାଗିଲେ ପୁରୁଷୋତ୍ତମ ଦେବ । ତହିଁଆରଦିନ ଗୋଟିଏ ଶକ୍ତିଶାଳୀ ସେନାଦଳ ସେ ଯାତ୍ରା-କଲେ କାଞ୍ଚି ।

ଅଳ୍ପଦିନପରେ କାଞ୍ଚିରାଜାର ଫାଟକ ନିକଟରେ ବାଜିଉଠିଲା ପୁରୁଷୋତ୍ତମଦେବଙ୍କ ଡଙ୍କା । ଯୁଦ୍ଧକ୍ଷେତ୍ରରେ ଓଡ଼ିଶାର ରାଜାଙ୍କୁ ଭେଟିବାପାଇଁ କାଞ୍ଚିରାଜା ବାହାରିଲେ ଗୋଟିଏ ସମଶକ୍ତିଶାଳୀ ସେନାନେଇ । ଉଭୟ ପକ୍ଷ ମଧ୍ୟରେ ଚାଲିଲା ଭୀଷଣ ସଂଗ୍ରାମ—ରାତି ନାହିଁ, ଦିନ ନାହିଁ, କେବଳ ଯୁଦ୍ଧ, ଯୁଦ୍ଧ, ପ୍ରତିମୁହୂର୍ତ୍ତରେ ଯୁଦ୍ଧ । ଶେଷରେ ଜିଣିଲେ କାଞ୍ଚିରାଜା । ମନଦୁଃଖରେ ଫେରିଲେ ପୁରୁଷୋତ୍ତମ-ଦେବ ନିଜ ଉଆସକୁ । ତାଙ୍କ ଜୀବନରେ ଏହା ପ୍ରଥମ ପରାଜୟ ।

ପୁରୁଷୋତ୍ତମଦେବ କାଞ୍ଚିରୁ ଫେରି ଅନୁଭବ କଲେ ଯେ, ସେ ଜଗତର ନାଥ ଜଗନ୍ନାଥଙ୍କୁ ନ ଜଣାଇ ଯୁଦ୍ଧରେ ଅବତୀର୍ଣ୍ଣ ହେବା-ଯୋଗୁଁ ତାଙ୍କର ହେଲା ଶୋଚନୀୟ ପରାଜୟ । ଆଉ କାଳବିଳମ୍ବ ନକରି ସେ ଶରଣବତ୍ସଳ ଯେହି ପତିତପାବନ ଜଗନ୍ନାଥଙ୍କ ଅଭୟ

Digitized by srujanika@gmail.com

ପାଦପଦ୍ମରେ ପଶିଲେ ଶରଣ । ଅତି ଭକ୍ତିଭରେ ଜଣାଇଲେ, ତାଙ୍କର ପୂର୍ବକାର୍ଯ୍ୟପାଇଁ କ୍ଷମା ଦେଇ ତାଙ୍କପ୍ରତି ଦୟା ବର୍ଷଣ କରିବାପାଇଁ; ଯାହାଫଳରେ ଉତ୍କଳର ହେବ ବିଜୟ ଆଉ ଉଡ଼ିବ ପ୍ରଭୁଙ୍କର ବିଜୟ ବାନା ଫରଫର ହୋଇ କାଞ୍ଚି ରାଜ୍ୟରେ ।

ଭକ୍ତର ଭଗବାନ ଶୁଣିଲେ ଭକ୍ତର ଡାକ । ସେ ସ୍ୱପ୍ନରେ ଦେଖାଦେଇ ପୁରୁଷୋତ୍ତମଦେବଙ୍କୁ କହିଲେ, ତୁ ବ୍ୟସ୍ତ ହୁଅନାହିଁ ପୁରୁଷୋତ୍ତମ । ଶୀଘ୍ର ଯୁଦ୍ଧ ଘୋଷଣାକର କାଞ୍ଚିରାଜା ବିରୁଦ୍ଧରେ । ମୁଁ ନିଜେ ଯାଇ ତୋତେ ସାହାଯ୍ୟ କରିବି ଯୁଦ୍ଧକ୍ଷେତ୍ରରେ ।

ପୁରୁଷୋତ୍ତମଦେବଙ୍କର ନିଦ ଭାଙ୍ଗିଲା । ପ୍ରଭୁଙ୍କର ଅଭୟ ବାଣୀ ତାଙ୍କୁ ପ୍ରଦାନ କରିଥିଲା ନବବଳ, ନବଉତ୍ସାହ ଓ ନବ-ଉନ୍ମାଦନା । ସେ ସେଗୁଡ଼ିକୁ ନେଇ ପୁଣି ଆୟୋଜନ କଲେ କାଞ୍ଚି ବିରୁଦ୍ଧରେ ଯୁଦ୍ଧ କରିବାପାଇଁ । ରାଇଜବାସୀ ସମସ୍ତେ ନିଜ ନିଜର କୌଳିକ ବ୍ୟବସାୟ ଛାଡ଼ିଦେଇ ଯୋଗଦେଲେ ନିଜଦେଶର ସେନାବାହିନୀରେ ନିଜ ଜାତି ଓ ନିଜ ସମ୍ରାଟଙ୍କର ଗୌରବରକ୍ଷା କରିବାପାଇଁ । କୁଳନାରୀମାନେ ସହାସ୍ୟ ବଦନରେ ସଜାଇଦେଲେ ନିଜ ନିଜ ସ୍ୱାମୀମାନଙ୍କୁ ଯୁଦ୍ଧ ବେଶରେ । ବିରାଟ ସେନାନେଇ ପୁରୁଷୋତ୍ତମଦେବ ଚାଲିଲେ କାଞ୍ଚିରାଇଜ ଆଡ଼କୁ । ତାଙ୍କ ଆଗେ ଆଗେ ଗଲେ ମହାପ୍ରଭୁ ଜଗନ୍ନାଥ ବଡ଼ଭାଇ ବଳଭଦ୍ରଙ୍କ ସହିତ; ଶ୍ରୀକ୍ଷେତ୍ର ଛାଡ଼ି କାଞ୍ଚି ଯୁଦ୍ଧରେ ଉତ୍କଳ ଗଜପତିଙ୍କୁ ସାହାଯ୍ୟ କରିବା-ପାଇଁ ମନୁଷ୍ୟ ବେଶରେ ସମସ୍ତଙ୍କର ଅଜାଣତରେ । ଜଗନ୍ନାଥ ଚଢ଼ିଥିଲେ ଗୋଟିଏ କଳାଘୋଡ଼ାରେ ଆଉ ବଳଭଦ୍ର ଚଢ଼ିଥିଲେ ଗୋଟିଏ ଧଳାଘୋଡ଼ାରେ ।

Digitized by srujanika@gmail.com

ଦୁଇଭାଇ ନିଜ ନିଜର ଘୋଡ଼ା ଛୁଟାଇଲେ ଖୁବ୍ ଦ୍ରୁତ ଗତିରେ । ପ୍ରଖର ଖରା, ସେହି ଖରାଯୋଗୁଁ ଭାରି ଶୋଷ ହେଲା ଉଭୟଙ୍କୁ । ସେତେବେଳକୁ ସେମାନେ ପହଞ୍ଚି ଯାଇଥିଲେ ଚିଲିକା କୂଳରେ । ଦହି କେଉଁଠି ମିଳିବ ତାହା ଚିନ୍ତିଲା ବେଳକୁ ଦେଖିଲେ ଜଣେ ଗଉଡ଼ୁଣୀ ମୁଣ୍ଡରେ ଦହି ପସରାଧରି ଆସୁଛି ସେମାନଙ୍କ ଆଡ଼କୁ । ପଚାରି ବୁଝିଲେ ନାଁଟା ତା'ର ମାଣିକ । ମାଣିକକୁ ଡାକି ଜଗନ୍ନାଥ କହିଲେ—ହେ ମାଣିକ, ଆମକୁ ଭାରି ଶୋଷ ହେଉଛି, ଛାତି ଶୁଖିଯାଉଛି । ଦେ, ଆମକୁ ଦହି ପିଇବାକୁ ଦେ' । ଯୁବକ ଦୁଇଜଣଙ୍କର ସୁନ୍ଦର ଚେହେରା ଦେଖି ମାଣିକ ଖୁସି ହୋଇଗଲା । ମହାଆନନ୍ଦରେ ତା ଦହି ପସରାଟି ତଳେ ଥୋଇଦେଇ କହିଲା—"ନିଅ, ମନଇଚ୍ଛା ପିଇନିଅ" ।

ଜଗନ୍ନାଥ ଓ ବଳଭଦ୍ର ପେଟେ ଲେଖାଏଁ ଦହି ପିଇସାରି ପୁଣି ଚଢ଼ିଲେ ନିଜ ନିଜ ଘୋଡ଼ା ଉପରେ । ତାହା ଦେଖି ମାଣିକ କହିଲା, "କହୋ ଘୋଡ଼ା ଚଢ଼ାଳି, ଦହି ମାଗିଲା ବେଳକୁ କେତେ କାକୁତି ମିନତି ହେଉଥିଲ, ଏବେ ପେଟେ ଲେଖାଏଁ ଦହି ପିଇ ଚାଲିଯିବାକୁ ବସିଲଣି ପଇସା ନଦେଇ ।" ଏହା ଶୁଣି ଜଗନ୍ନାଥ ହସିହସି କହିଲେ, ପଇସା ଦେବାକୁ ଭୁଲିନାହୁଁ ମାଣିକ, ଆମ ପାଖରେ ତ ପଇସା ନାହିଁ ଆଉ ତୋତେ ଦେବୁ କଅଣ ? ଏହା ଶୁଣି ଟିକିଏ ବିରକ୍ତ ହୋଇ ମାଣିକ କହିଲା—ପଇସା ଯଦି ନ ଥିଲା ତେବେ ଦହି ପିଇଲ କାହିଁ ? ତା କଥା ଶୁଣି ହସିଲେ ଜଗନ୍ନାଥ ଓ ବଳଭଦ୍ର । ଜଗନ୍ନାଥ ତାକୁ କହିଁକେଇ କରି କହିଲେ, "ଆଚ୍ଛା ତୁ ଗୋଟିଏ କାମ କର । ମୋର ଏଇ ମୁଦିଟିକୁ ବନ୍ଧକ ରଖ । ପଛରେ ଉତ୍କଳ ସମ୍ରାଟ ଆସୁଛନ୍ତି ଅସଂଖ୍ୟ ସୈନ୍ୟସାମନ୍ତ ନେଇ । ତାଙ୍କୁ ଏ ମୁଦିଟି ଦେଖାଇ ନେଇଯିବୁ ତୋ ଦହିର ଦାମ । ଏହା

Digitized by srujanika@gmail.com

କହି ଜଗନ୍ନାଥ ନିଜ ହାତରୁ ରତ୍ନମୁଦିଟିଏ କାଢ଼ି ବଢ଼ାଇ ଦେଲେ ମାଣିକକୁ ତା'ପରେ ଦୁଇ ଭାଇ ଚାଲିଗଲେ ସେଠାରୁ ନିଜ ନିଜ ଘୋଡ଼ା ପିଠିରେ ବସି ।

ମାଣିକ ସେଇଠି ତା ଖାଲି ଦେହଟିକୁ ଥୋଇଦେଇ ରହିଁ ରହିଲା ସମ୍ରାଟଙ୍କ ଆଗମନକୁ । କିଛି ସମୟ ପରେ ସତକୁସତ ପୁରୁଷୋତ୍ତମଦେବ ସୈନ୍ୟସାମନ୍ତ ଘେନି ପହଞ୍ଚିଲେ ସେଇଠି । ମାଣିକା ତାଙ୍କୁ ରତ୍ନମୁଦି ଦେଇ ମାଗିଲା ନିଜର ଦହିର ଦାମ୍ । ହଠାତ୍ କିଛି ବୁଝିପାରିଲେନି ପୁରୁଷୋତ୍ତମଦେବ । ଗଉଡ଼ୁଣୀଠାରୁ ସବୁ ଘଟଣା ଶୁଣି ଓ ସେହି ରତ୍ନମୁଦିକୁ ଚିହ୍ନି ଜାଣିପାରିଲେ ଭକ୍ତର ଭଗବାନ ସ୍ୱୟଂ ଜଗନ୍ନାଥ ମହାପ୍ରଭୁ ପ୍ରିୟ ନୀଳାଚଳ ଛାଡ଼ି ଭାଇ ବଳଭଦ୍ରଙ୍କୁ ସାଙ୍ଗରେ ନେଇ ଯୋଦ୍ଧା ବେଶରେ ଆଗେ ଆଗେ ଚାଲିଛନ୍ତି କେବଳ ତାଙ୍କୁ ସାହାଯ୍ୟ କରିବାପାଇଁ ।

ମାଣିକା ଉପରେ ଭାରି ଖୁସି ହୋଇଗଲେ ପୁରୁଷୋତ୍ତମଦେବ । ତାକୁ ଦହିର ଦାମ ଦେଉଦେଉ କହିଲେ, "ଧନ୍ୟ ମାଣିକ, ଧନ୍ୟ ତୁ, ଆଜି ସ୍ୱଚକ୍ଷୁରେ ଦେଖିପାରିଲୁ ପ୍ରଭୁ ଜଗନ୍ନାଥଙ୍କୁ ଆଉ ତାଙ୍କ ଭାଇ ବଳଭଦ୍ରଙ୍କୁ ।" ରଜାଙ୍କଠାରୁ ଏହା ଶୁଣି ଅତି ଭକ୍ତିଭରେ ପ୍ରଣାମ ଜଣାଇଲା ମାଣିକ ମହାପ୍ରଭୁ ଜଗନ୍ନାଥଙ୍କୁ ଓ ବଳଭଦ୍ରଙ୍କୁ । ମାଣିକ ଉପରେ ପୁରୁଷୋତ୍ତମଦେବ ଏତେ ଖୁସି ହୋଇଗଲେ ଯେ, ସେଠାରେ ମାଣିକ ପାଟଣା ବୋଲି ଗୋଟିଏ ଗାଁ ବସାଇଦେଲେ । ଆଜିସୁଦ୍ଧା ସେହି ଚିଲିକା କୂଳରେ ରହି ସେହି ଗାଁଟି ଗଜପତି ପୁରୁଷୋତ୍ତମଦେବଙ୍କର କାଞ୍ଚି ଯାତ୍ରାକଥା ସବୁବେଳେ ସ୍ମରଣ କରାଇ ଦେଉଛି । ଏବେସୁଦ୍ଧା ଅତି ଭଲ ଦହି ମିଳୁଛି ସେଇଠି । ଯାହାକି କାଟି ଖଣ୍ଡଖଣ୍ଡ କରି ଖାଇହେବ ।

Digitized by srujanika@gmail.com

କିନ୍ତୁ ଧନ ବୃଲିବା ପରେ ଉତ୍କଳ-ସେନା ଯାଇ ପହଞ୍ଚିଲେ କାଞ୍ଚି ସୀମାରେ । ତା'ପରେ ପରର ଆକ୍ରମଣ କଲେ ସେହି ରାଜ୍ୟକୁ । କାଞ୍ଚିରାଜା ଭାବିଥିଲେ ପୁରୁଷୋତ୍ତମଦେବ ଦିନେ ନା ଦିନେ ତାଙ୍କ ରାଜ୍ୟ ଆକ୍ରମଣ କରିବେ ; ତେଣୁ ସେ ସବୁବେଳେ ପ୍ରସ୍ତୁତ ରହିଥିଲେ ପୁରୁଷୋତ୍ତମଦେବଙ୍କୁ ମୁକାବିଲା କରିବାପାଇଁ । ସେ ସଙ୍ଗେ ସଙ୍ଗେ ପୁରୁଷୋତ୍ତମଦେବଙ୍କ ସୈନ୍ୟମାନଙ୍କ ଆକ୍ରମଣରେ ବାଧା ଦେଲେ । ଉଭୟ ସେନା ମଧ୍ୟରେ ଚାଲିଲା ପ୍ରବଳ ସଂଗ୍ରାମ । କାଞ୍ଚି ସେନା ଥିଲେ ଉତ୍କଳସେନାଙ୍କ ଠାରୁ ଅଧିକ ପରାକ୍ରମଶାଳୀ ; କିନ୍ତୁ ଏଥର ଯେ ସ୍ୱୟଂ ଜଗନ୍ନାଥ ସାହାଯ୍ୟ କରୁଛନ୍ତି ଉତ୍କଳ ସମ୍ରାଟଙ୍କୁ । ତାଙ୍କର ଆଉ କ୍ଷତି କରିବ କିଏ ? କାଞ୍ଚିରାଜା ବହୁତ ଚେଷ୍ଟାକଲେ ପୁରୁଷୋତ୍ତମଦେବଙ୍କୁ ପରାସ୍ତ କରିବା ପାଇଁ ; କିନ୍ତୁ ପାରିନେଲ । ଶେଷରେ ନିଜେ ପରାଜିତ ହୋଇ ତାଙ୍କର ପ୍ରିୟତମା କନ୍ୟା ପଦ୍ମାବତୀଙ୍କୁ ପୁରୁଷୋତ୍ତମଦେବଙ୍କ ହସ୍ତରେ ପ୍ରଦାନ କରିବାପାଇଁ ବାଧ୍ୟ ହେଲେ । ପୁରୁଷୋତ୍ତମଦେବ ତାଙ୍କ ସାଙ୍ଗରେ କାଞ୍ଚି ରାଜାଙ୍କ ଇଷ୍ଟଦେବତା ବିଘ୍ନରାଜ ଗଣେଶ ଓ ସାକ୍ଷୀଗୋପାଳ ନାମକ ଅନ୍ୟ ଏକ ପ୍ରତ୍ୟକ୍ଷ ଦେବତାଙ୍କୁ ସାଙ୍ଗରେ ନେଇ ଆସିଲେ । ତାଙ୍କ ଆଦେଶରେ ଗଣେଶ ମୂର୍ତ୍ତି ଜଗନ୍ନାଥ ମନ୍ଦିରରେ ଏବଂ ସାକ୍ଷୀଗୋପାଳ ମୂର୍ତ୍ତି କଟକର ବାରବାଟୀ ଦୁର୍ଗ ମଧ୍ୟରେ ରଖାଗଲା । ବର୍ତ୍ତମାନ ସୁଦ୍ଧା ଗଣେଶ ବିଗ୍ରହ ଜଗନ୍ନାଥ ମନ୍ଦିରରେ ପୂଜା ପାଉଛନ୍ତି ; କିନ୍ତୁ ସାକ୍ଷୀଗୋପାଳ ବିଗ୍ରହ କଟକରୁ ସ୍ଥାନାନ୍ତରିତ କରିଯାଇ ପ୍ରତିଷ୍ଠା କରାଯାଇଛି ସତ୍ୟବାଦୀରେ ।

ପୁରୁଷୋତ୍ତମଦେବ ଗୋଟିଏ ରାଜକୀୟ ଶୋଭାଯାତ୍ରାରେ ପଦ୍ମାବତୀଙ୍କ ସହ ଫେରିଲେ ନିଜ ନଅରକୁ । ତାଙ୍କୁ ଅତି ଉଚ୍ଛ୍ୱସିତ

Digitized by srujanika@gmail.com

ସମ୍ବର୍ଦ୍ଧନା ଦିଆଗଲା ନିଜ ରାଜ୍ୟରେ ; କିନ୍ତୁ ପୁରୁଷୋତ୍ତମଦେବ ଆଦୌ ଆନନ୍ଦିତ ହେଲେନି । ତାଙ୍କର ମନେହେଉଥିଲା ସତେ-ଯେପରି କାଞ୍ଚି ରାଜାଙ୍କର ସେହି ଅପମାନଜନକ ବାଣୀ ବର୍ତ୍ତମାନ ସୁଦ୍ଧା ବାଜୁଛି ତାଙ୍କ କାନରେ । ସେ ସଙ୍ଗେ ସଙ୍ଗେ ନିଜର ବୃଦ୍ଧ ମନ୍ତ୍ରୀଙ୍କୁ ଡକାଇ କହିଲେ, "ନିଅ ଏହାକୁ ତୁମଘରେ ରଖ । ଏହା ବାପ ମୋତେ ଚଣ୍ଡାଳ ବୋଲି କହିଲା । ଏହାକୁ ଗୋଟିଏ ଚଣ୍ଡାଳ ସହିତ ବିବାହ କରାଇ ଦିଅ । ତା ବାପା ମୋତେ ଯେଉଁ ଅପମାନ ଦେଇଥିଲା, ତାହାର ପ୍ରତିଫଳ ସେ ପାଉ ।"

ବୃଦ୍ଧ ମନ୍ତ୍ରୀ ଥିଲେ ଅତି ଚତୁର । ସେ ପଦ୍ମାବତୀଙ୍କୁ ନେଇ ନିଜ ଘରେ ପାଳିଲେ ଅତି ଯତ୍ନରେ । ରଥଯାତ୍ରା ଦିନ ପୁରୁଷୋତ୍ତମ-ଦେବ ଛେରାପହଁରା କରୁଥିବା ବେଳେ ତାଙ୍କ ସହିତ ପଦ୍ମାବତୀଙ୍କୁ ବିବାହ କରାଇଦେବାପାଇଁ ମନେମନେ ସ୍ଥିର କଲେ । କିଛି ଦିନପରେ ରଥଯାତ୍ରା ପଡ଼ିଲା । ବଡ଼ଦାଣ୍ଡରେ ଲକ୍ଷ ଲକ୍ଷ ଲୋକ ରୁଣ୍ଡ ହେଲେ ରଥଉପରେ ଦିଅଁ ଦର୍ଶନ କରିବାପାଇଁ । ଦିଅଁଙ୍କୁ ରଥଉପରକୁ ଅଣାଯିବା ଆଗରୁ ରାଜା ପୁରୁଷୋତ୍ତମଦେବ ସବୁବର୍ଷ ସେହିଦିନ କଲାପରି ଛେରାପହଁରା କଲେ । ଏତିକିବେଳେ ବୃଦ୍ଧ ମନ୍ତ୍ରୀ ପହଞ୍ଚିଲେ ପଦ୍ମାବତୀଙ୍କୁ ସଙ୍ଗରେ ନେଇ । ସେଇଠି ହାତଯୋଡ଼ି ରାଜାଙ୍କୁ ନିବେଦନ କଲେ "ମହାରାଜ, ଆଜି ଶେଷହେଲା ଏହି ବୃଦ୍ଧର କର୍ତ୍ତବ୍ୟ, ଯାହା ଯେଉଁ ଗୁରୁଭାର ମୋର ଏହି ଦୁର୍ବଳ କାନ୍ଧରେ ଲଦି ଦେଇଥିଲେ ଆଜି ମୁଁ ତାହା ଖସାଇ ଦେବାକୁ ଯାଉଛି । ମହାରାଜ ! ଆପଣଙ୍କର ହୁକୁମ ହୋଇଥିଲା ପଦ୍ମାବତୀଙ୍କୁ ଜଣେ ଚଣ୍ଡାଳ ସହିତ ବିବାହ କରାଇ ଦେବାପାଇଁ । ଆପଣ ଏଇନେ ଚଣ୍ଡାଳ କାମ କରୁଛନ୍ତି, ନୁହେଁ ? ତେଣୁ ଆପଣଙ୍କ ସହିତ ମୁଁ ପଦ୍ମାବତୀଙ୍କୁ ବିବାହ ଦେଲି ।"

Digitized by srujanika@gmail.com

ପଦ୍ମାବତୀ ସଙ୍ଗେ ସଙ୍ଗେ ପୁରୁଷୋତ୍ତମଦେବଙ୍କ ଗଳାରେ ଲମ୍ବାଇଦେଲେ ବରଣମାଳା । ଏହା ଦେଖି ଆନନ୍ଦରେ ନାଚି-ଉଠିଲେ ସେଇଠି ଜମା ହୋଇଥିବା ସବୁଲୋକ । ମରଦଙ୍କର ହରିବୋଲ ଓ ମାଇପିଙ୍କର ହୁଳହୁଳି ଧ୍ୱନିରେ କମ୍ପିଉଠିଲା ପୁଣି ବଡ଼ଦାଣ୍ଡଟା । ବୃଦ୍ଧମନ୍ତ୍ରୀଙ୍କର ଚତୁରତା ଦେଖି ଲଜ୍ଜିତ ହେଲେ ପୁରୁଷୋତ୍ତମଦେବ ; କିନ୍ତୁ ତାଙ୍କୁ ପ୍ରଶଂସା ନକରି ରହିପାରିଲେନି । ତା'ପରେ ସେ କାଞ୍ଚିରାଜାଙ୍କୁ କ୍ଷମାଦେଇ ଫେରାଇଦେଲେ ତାଙ୍କ ରାଜ୍ୟ ତାଙ୍କୁ । ଯଥାସମୟରେ ସମ୍ପନ୍ନ ହେଲା ପଦ୍ମାବତୀ ଓ ପୁରୁ-ଷୋତ୍ତମଦେବଙ୍କ ବିବାହ ଉତ୍ସବ, ପବିତ୍ର ଉତ୍କଳ ସିଂହାସନ ଆହୁରି ଅଧିକ ପବିତ୍ର ହୋଇଗଲା ସାଧ୍ୱୀ, ଗୁଣବତୀ ପଦ୍ମାବତୀଙ୍କୁ ମହାରାଣୀ ରୂପେ ପାଇ ।

ପଦ୍ମାବତୀଙ୍କ ସହ ବିବାହ ହୋଇ ରହିବାପରେ ପୁରୁଷୋତ୍ତମ ଆଉ ଯୁଦ୍ଧ କରିବାକୁ ମନ ବଳାଇଲେ ନାହିଁ । ସ୍ଥିର କଲେ ଜୀବନର ଅବଶିଷ୍ଟ କାଳ କଟାଇବେ ଦେବପୂଜାଦି ଧର୍ମ-କାର୍ଯ୍ୟରେ ନିଜକୁ ନିୟୋଜିତ କରି । ଲୋକମାନଙ୍କର ସୁଖ ସ୍ୱାଛନ୍ଦ୍ୟ ନିମନ୍ତେ ବିଭିନ୍ନ ସ୍ଥାନରେ ଖୋଳାଇଲେ କୂପ, ବାପୀ ଓ ପୁଷ୍କରିଣୀ । ନିର୍ମାଣ କଲେ ଦେବତା ମନ୍ଦିର, ପଥ ଘାଟ, ଧର୍ମଶାଳା ପ୍ରଭୃତି । ବାଟୋଇମାନଙ୍କ ସୁବିଧା ପାଇଁ ସଡ଼କର ଉଭୟ ପାର୍ଶ୍ୱରେ ରୋପଣ କରାଗଲା ବୃକ୍ଷ, ଖୋଳାଗଲା କୂଅ ଓ ନିର୍ମାଣ କରାଗଲା ପାନ୍ଥଶାଳା । ଦିନକୁଦିନ ଉତ୍କଳର ଭାଗ୍ୟ ଜଳିଉଠିଲା ଅଧିକ ଉଜ୍ଜଳ ହୋଇ । ଘରି-ଆଡ଼େ ବିରାଜିଲା ଶାନ୍ତି, ପ୍ରଜାମାନେ ସମସ୍ତେ ଜୀବନଯାପନ କଲେ ଅତି ସୁଖରେ । ଘରିଆଡ଼େ ଶୁଣାଗଲା ଗଜପତି ପୁରୁଷୋତ୍ତମଦେବ ଓ ରାଣୀ ପଦ୍ମାବତୀଙ୍କ ପ୍ରଶଂସା । ଏତିକିବେଳେ ପ୍ରତାପରୁଦ୍ରଙ୍କୁ ଜନ୍ମ କରିବା ପରେ ପରେ ରାଣୀ ପଦ୍ମାବତୀ ବିଦାୟନେଲେ ଏଇ ସଂସାରରୁ

Digitized by srujanika@gmail.com

ଯୌବନ ବୟସରେ । ଏହି ଦାରୁଣ ପତ୍ନୀ ବିଚ୍ଛେଦ ଅଗ୍ନି ଚୂର୍ଣ୍ଣବିଚୂର୍ଣ୍ଣ କରିପକାଇଲା ପୁରୁଷୋତ୍ତମଦେବଙ୍କ ହୃଦୟକୁ ଏକାବେଳକେ । ତଥାପି ସେ ନିଜ କର୍ତ୍ତବ୍ୟରୁ ବିଚ୍ୟୁତ ହେଲେ ନାହିଁ । ଟିକିଏ ହେଲେ ଅବସର ସମୟରେ ଖାଲି ବସିରହିଲେ ପଦ୍ମାବତୀ ମନେପଡ଼ିବେ ଭାବି ସେହି ସମୟରେ ଚଳାଇଲେ ସାହିତ୍ୟଚର୍ଚ୍ଚା । ପଣ୍ଡିତମାନଙ୍କ ସହିତ । ସେ ନିଜେ ଥିଲେ ବିଦ୍ୟାନୁରାଗୀ ଓ ପଣ୍ଡିତ । ସଂସ୍କୃତ ସାହିତ୍ୟରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ସେ ନିଜେ "ତ୍ରିକାଣ୍ଡକୋଷ" ନାମକ ଏକ ସଂସ୍କୃତ ଅଭିଧାନ ପ୍ରଣୟନ କଲେ । ଏହି ଅଭିଧାନ ସଂସ୍କୃତ ସାହିତ୍ୟରେ ଏକ ଅମୂଲ୍ୟ ରତ୍ନ । ବର୍ତ୍ତମାନସୁଦ୍ଧା ଭାରତରେ ଏହାର ଆଦର ଅତ୍ୟୁଚ୍ଚ ଅଛି । ତାଙ୍କଦ୍ୱାରା ନାମ ମାଳିକା ନାମକ ଏକ ସଂସ୍କୃତ ସାହିତ୍ୟ ଅଭିନବ ଗୀତଗୋବିନ୍ଦ, ମୁକ୍ତି ଚିନ୍ତାମଣି, ଦୁର୍ଗୋତ୍ସବ, ଅଭିନବ ବେଣୀ ସଂହାର, ବିଷ୍ଣୁଭକ୍ତି କଳ୍ପଦ୍ରୁମ ପ୍ରଭୃତି ରଚନା କରିଥିଲେ ସେ । ତାଙ୍କ ସଭାପଣ୍ଡିତ ବିଶ୍ୱନାଥ ମହାପାତ୍ର ରଚନା କରିଥିଲେ ସାହିତ୍ୟ ଦର୍ପଣ, ଯାହାକି ଗୋଟିଏ ଅମୂଲ୍ୟ ଗ୍ରନ୍ଥରୂପେ ଆଜିସୁଦ୍ଧା ପରିଗଣିତ ହେଉଛି ।

ଏହାପରେ ପୁରୁଷୋତ୍ତମଦେବ ନିଜ ମୋହରରେ ଖୋଳିଲେ "ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟୋତ୍କଳ ବର୍ଗେଶ୍ୱରଧିରାୟ ଭୂତଭୈରବ ଦେବସାଧୁ ଶାସନୋତ୍କୀର୍ଣ୍ଣ ରାଉତରାୟ ଅତୁଳ ବଳପରାକ୍ରମ ସଂଗ୍ରାମ ସହସ୍ରବାହୁ କ୍ଷତ୍ରିୟକୁଳ ଧୂମକେତୁ" ଏହି ଉପାଧି, ଏହା ପୂର୍ବରୁ ଏତେ ଦୀର୍ଘ ଉପାଧି ନିଜ ମୋହରରେ ବ୍ୟବହାର କରିନଥିଲେ ଓଡ଼ିଶାର କୌଣସି ରାଜା । ଦୀର୍ଘ ୩୦ ବର୍ଷକାଳ ଦକ୍ଷତାର ସହିତ ରାଜ୍ୟଶାସନ କରି, ପ୍ରଜାମାନଙ୍କର ପ୍ରିୟଭାଜନ ହୋଇସାରି ୧୪୯୫ ଖ୍ରୀଷ୍ଟାବ୍ଦରେ ପୁରୁଷୋତ୍ତମଦେବ ଚାଲିଗଲେ ଅମର ଧାମକୁ ।



Digitized by srujanika@gmail.com